# ଅମର ଜୀବନ

ଅଧ୍ୟାପକ ଶ୍ରୀ ଗୋଲକବିହାରୀ ଧଳ, ଏମ୍. ଏ. (ପାଟନା)
ଏମ୍. ଏ. (ଲଣ୍ଡନ)

ପୁନର୍ମୁଦ୍ରଣ
୧୯୬୭

ପ୍ରକାଶକ

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର
ବିନୋଦ ବିହାରୀ,
କଟକ—୨

ମୂଲ୍ୟ—ଏକ ଟଙ୍କା ପଚାଶ ପଇସା

# ସୂଚିପତ୍ର

# ମହାମାନବ ମହାତ୍ମା ଗାନ୍ଧି

ପୃଥିବୀର ଜଣେ ଅତି ସାଧାରଣ ମଣିଷ ସେ । ପୋଷାକ ବୋଇଲେ ଖଣ୍ଡେ ଅଣ୍ଟାସାରିଆ ଧୋତି, ଖାଦ୍ୟ ବୋଇଲେ ଛେଳି ଦୁଧ, ଦେହ ବୋଇଲେ ଦୁଇଖଣ୍ଡ ହାଡ଼, ଓଜନ ବୋଧହୁଏ ଶହେ ପାଉଣ୍ଡରୁ କମ୍; ମାତ୍ର ଏହି ସାଧାରଣ ମଣିଷ ଜଣକ ଯେତେବେଳେ ରୁଷନ୍ତି—ଖାଇବେ ନାହିଁ ବୋଲି ମନା କରି ବସନ୍ତି, ସେତେବେଳେ ସାରା ଦୁନିଆ ଦୋହଲିଯାଏ । ପୃଥିବୀର ସବୁ ବଡ଼ ବଡ଼ ଖବର-କାଗଜରେ ବଡ଼ ବଡ଼ ଅକ୍ଷରରେ ସମ୍ବାଦ ବାହାରେ, ବାୟୁମଣ୍ଡଳରେ ହତାଶ ସୃଷ୍ଟି ହୁଏ । ସେହି ଶ୍ରେଷ୍ଠ ମଣିଷଟି ମହାତ୍ମା ଗାନ୍ଧି । ଏହିଯୁଗର ପ୍ରଥମ ଶ୍ରେଣୀ ଭାବୁକମାନଙ୍କ ଭିତରୁ ସେ ଜଣେ, ବୋଧହୁଏ ସର୍ବପ୍ରଥମ । ଭକ୍ତଶିଷ୍ୟମାନେ ତାଙ୍କୁ ଅବତାର ବୋଲି ମାନନ୍ତି । ବଡ଼ଲାଟ ଲିନଲିଥଗୋ କହନ୍ତି, 'ଭାରତରେ ସବୁଠାରୁ ବଡ଼ ଜନସ ମହାତ୍ମା ଗାନ୍ଧି' ଚର୍ଚ୍ଚିଲ କହନ୍ତି, 'ଲଙ୍ଗଳା ଫକୀର', ବିଜ୍ଞାନ-ଋଷିକ ଆଇନଷ୍ଟାଇନ କହନ୍ତି, 'ଗାନ୍ଧି ହେଉଛନ୍ତି ସବ ବିଶ୍ୱର ବିବେକର ବାଣୀ ।' ଆମେ କହୁ, 'ନରଶ୍ରେଷ୍ଠ ।'

୧୮୬୯ ମସିହା ପୃଥିବୀ-ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ସମୟ । ସେହି ବର୍ଷ ଫିଟିଥାଏ ସୁଏଜ କେନାଲ । ଛପା ହୋଇଥାଏ କାର୍ଲ ମାର୍କସଙ୍କର 'କ୍ୟାପିଟାଲ' ବହି । ଫରାସୀ ଲୋକେ ନେପୋଲିଅନଙ୍କର ଶତବାର୍ଷିକ ପାଳନ କରୁଥାନ୍ତି । ଜର୍ମାନୀର ବିସମାର୍କ ଯୁଦ୍ଧ-ଡାକରା ଦେଉଥାନ୍ତି ଓ ବିଲାତରେ ରାଜତ୍ୱ କରୁଥାନ୍ତି ମହାରାଣୀ ଭିକ୍ଟୋରିଆ । ସେହି ବର୍ଷ ପୋରବନ୍ଦରରେ ୩.୩୫ ମିଟର ଓସାର, ୪.୦୫ ମିଟର ଲମ୍ବ, ୬.୧୦ ମିଟର ଉଚ୍ଚର କୋଠିଏ କ୍ଷୁଦ୍ର ଘରେ ଜନ୍ମ ହେଲେ ଏହି ଯୁଗର ନର ଶ୍ରେଷ୍ଠ ମୋହନ ଦାସ କରମଚାନ୍ଦ ଗାନ୍ଧି । ସେ ଦିନଟି ଅକ୍ଟୋବର ୨ ତାରିଖ ।

ଏ ଲୋକ ସାଧାରଣ ମଣିଷ ଜଣେ । ଷ୍ଟାଲିନ୍‌ଙ୍କ ସୈନ୍ୟ ବଳ ବା ଚର୍ଚ୍ଚିଲଙ୍କ ଗୁଲବାଜ ନାହିଁ । ଆଇନଷ୍ଟାଇନ୍ ବିଜ୍ଞାନ ବା ନିଜାମଙ୍କ ଧନ ତାଙ୍କର ନାହିଁ । କିନ୍ତୁ ଏ ସମସ୍ତଙ୍କୁ ବଳି ସେ ଶକ୍ତିଶାଳୀ । ତାଙ୍କର ସବୁ ସମ୍ପତ୍ତି ବିକଲେ କୋଡ଼ିଏ ଟଙ୍କା ହେବ କି ନାହିଁ; କିନ୍ତୁ ସେ ଯେକୌଣସି କୋଟିପତିଠାରୁ ବଡ଼ । ଦେହର ବଳ ତାଙ୍କର କମ୍ । ତରବାରିର ଉପରେ ବିଶ୍ୱାସ କରନ୍ତି ନାହିଁ । କିନ୍ତୁ ତାଙ୍କର ମନର ବଳ ଶତ ଯୁଦ୍ଧଜାହାଜଠାରୁ ବଳୀୟାନ । ସେ ସରକାର ନୁହନ୍ତି; କିନ୍ତୁ କୋଟି ଜନତାର ସହସ୍ର ସୈନ୍ୟସାମନ୍ତ ଓ ସରକାର ତାଙ୍କୁ ହାତ ଉଠାନ୍ତି । ପାଉଁଶ ବୋଳା ଲଙ୍ଗଳା ଶିବ ହଡ଼ା ଚଢ଼ି ଶ୍ମଶାନରେ ବୁଲନ୍ତି; କିନ୍ତୁ ସ୍ୱର୍ଗରେ ଦେଖିଲେ ଇନ୍ଦ୍ର ବି ଆସନରୁ ଓହ୍ଲାଇ ତାଙ୍କ ପାଦତଳେ ପ୍ରଣାମ କରନ୍ତି । (ଭିକ୍ଷୁକ-ପାଦରେ ଇନ୍ଦ୍ର ମୁକୁଟର ମଣିଲାଗି ଝଲସି ଉଠେ)। ସେହି ସୌଭାଗ୍ୟ ଏ ପୃଥିବୀରେ ଏକା ଥିଲା ଗାନ୍ଧିଙ୍କର ।

ଓ୍ୱେଷ୍ଟମିନଷ୍ଟର ପାଲେସ୍ ବ୍ରିଟିଶ ରାଜାଙ୍କ ନିଅର । ମନ୍ଦିରରେ ଖାଲି ପାଦ କେବେ ସେ ନଅରର ପାହାଚରେ ପଡ଼ି ନ ଥିଲା । ପ୍ରଥମ କରି ପକାଇଲେ ଗାନ୍ଧି । ବ୍ରିଟିଶ ରାଜାଙ୍କ ନଗରରେ ଲଙ୍ଗଳା ପାଦ ପଡ଼ିବାର ସେଇ ପ୍ରଥମ, ସେଇ ଶେଷ । ଦୁନିଆରେ ଦିଶୁ ଆଉ କାହାର ସେ ସାଧନା ବା ସେ ସାହସ ନାହିଁ । ନିଆଁ ଗିଳା ଚର୍ଚ୍ଚିଲ କହନ୍ତି, 'ଲଙ୍ଗଳା ଫକୀର'; କିନ୍ତୁ ଫକୀର ଥରେ ବୁଝି ବସିଲେ ବ୍ରିଟିଶ ସରକାରଙ୍କର ରକ୍ତ କାଳର ହୋଇଯାଏ । ଗାନ୍ଧି ବ୍ରିଟିଶ ରାଜାଙ୍କ ନଅରକୁ ଗଲାବେଳେ କୋଠା ଉପରୁ ଦେଖୁଥିଲେ ଅଷ୍ଟମ ଏଡ଼ୱାର୍ଡ଼ । ସେ ତାଙ୍କ ପାର୍ଶ୍ୱଚରମାନଙ୍କୁ ସେତେବେଳେ କହୁଥିଲେ, 'ଚର୍ଚ୍ଚିଲ ଯାହାଙ୍କୁ ଲଙ୍ଗଳା ଫକୀର ବୋଲି କହୁଛନ୍ତି, ସେଇ ଦିନେ ବ୍ରିଟିଶ ସରକାରଙ୍କୁ ଲଙ୍ଗଳା ଫକୀର କରି ଛାଡ଼ିଦେବେ । ସେଇ ରାଜପୁତ୍ର କଥା ଶେଷରେ ସତ ହେଲା ।

ପୃଥିବୀରେ ବଡ଼ଲୋକର ଅଭାବ ନାହିଁ—ମହାପୁରୁଷର ଅଭାବ । କିନ୍ତୁ ଗାନ୍ଧି ଜଣେ ମହାପୁରୁଷ । ଲିଙ୍କନ୍, ଲେନିନ୍, ଷ୍ଟାଲିନ, ଚର୍ଚ୍ଚିଲ ସମସ୍ତେ ମାଟିରୁ ଉଠି ମହଲରେ ଶେଷଜୀବନ କଟାଇଛନ୍ତି । ମାତ୍ର ଗାନ୍ଧି ମହଲରୁ ଆସି ମାଟିରେ ଶୋଇଛନ୍ତି—ପୋରବନ୍ଦରର ଦିବ୍ୟ ମହଲରୁ ସେବାଗ୍ରାମର ମାଟିଆ କୁଡ଼ିଆ, ବ୍ରିଟିଶ ଗଳମେପୋଷାକ ଓ ଟିଲକ ଟୋପିରୁ ଲେଙ୍ଗୁଟି, କମ୍ବା ଝୋଲା, ସାହେବୀ ଲଞ୍ଚ, ଡିନରରୁ ଛେଳିଦୁଧ, ଶାଗପତ୍ର । ହାତରେ ନ ଥିଲା ଲୁହାର ତରବାରି; କିନ୍ତୁ ଥିଲା କାଗଜ ତିଆରି ଅସ୍ତ୍ର—ଗୀତା ।' ତାଙ୍କ ସାମ୍ରାଜ୍ୟ ମାଟିର ସାମ୍ରାଜ୍ୟ ନୁହେଁ—ମନର ସାମ୍ରାଜ୍ୟ, ସତ୍ୟ ଅହିଂସାର ସାମ୍ରାଜ୍ୟ ।

ଗାନ୍ଧିଙ୍କ ଜୀବନ ଅତି ଆଶ୍ଚର୍ଯ୍ୟ ଜୀବନ । ସେ ଭାରତ କଂଗ୍ରେସର ଚଉଅଣିଆ ମେମ୍ବର ବି ନୁହନ୍ତି । କିନ୍ତୁ ସେ କଂଗ୍ରେସର ମା ବାପ । ସତ୍ୟ ଅହିଂସା ତାଙ୍କର ଜୀବନର ବ୍ରତ । ଭାରତର ସ୍ୱାଧୀନତା ତାଙ୍କର ଲକ୍ଷ୍ୟ । ମାତ୍ର ସତ୍ୟ ତାଙ୍କର ସାଧନା । ଶତ୍ରୁ ଆଗରେ ବି ମନ ଖୋଲି ସବୁ କଥା ସେ କହିପକାନ୍ତି । ତାଙ୍କ ମନରେ ଏମିତି କଥା ନ ଥାଏ, ଯାହା ଅନ୍ୟ ଲୋକଠାରୁ ସେ ଲୁଚାଇ ରଖନ୍ତି । ଭୁଲ୍ କଲେ ବଡ଼ ପାଟିରେ ସମସ୍ତଙ୍କୁ ଜଣାଇ ଦିଅନ୍ତି । ସେ ଭୁଲ୍ କରିଛନ୍ତି ବୋଲି ଭୁଲ ସ୍ୱୀକାର କଲେ ଆଶାର ବଳ ବଢ଼େ ବୋଲି ସେ କହନ୍ତି । ସେ ଯଦି ଆଜ ଗୋଟିଏ କଥା କହନ୍ତି ଦରକାର ପଡ଼ିଲେ କାଲି ତାହାର ପ୍ରତିବାଦ କରିପାରନ୍ତି କହନ୍ତି, ସେ ସତ୍ୟର ପରୀକ୍ଷା କରୁଛନ୍ତି । କାଲି ଯାହା କହୁଛନ୍ତି ଆଜ ତାକୁ ବଦଳାଇ ଦେବାରେ କୌଣସି ବାଧା ନାହିଁ । ବିଦେଶୀ ଲୋକେ ତାଙ୍କର ଏ ଢଙ୍ଗ ଦେଖି ତାଜୁବ୍ ହୋଇଯାନ୍ତି; ମାତ୍ର ପ୍ରଶଂସା କରନ୍ତି । ଯଦି ଏ ଦୁନିଆରେ ସତ କହି କିଏ ରାଜନୀତି କରୁଛନ୍ତି, ତେବେ ସେହି କେବଳ ଗାନ୍ଧି । ଏହାର ଦ୍ୱିତୀୟ ଉଦାହରଣ ଦୁନିଆ ଏ ପର୍ଯ୍ୟନ୍ତ ଦେଖି ନାହିଁ ।

କୌଣସି ଭୁଲ କଲେ ନିଜକୁ ପବିତ୍ର କରିବା ପାଇଁ ସେ ଉପବାସ କରନ୍ତି । ଗାନ୍ଧି ଉପବାସ କଲେ କି ଦେଶ, କି ବିଦେଶ ସବୁଠି ଚହଳ ପଡ଼େ । ଭଗବାନ ଓ ଗୀତାରେ ତାଙ୍କର ଅଖଣ୍ଡ ବିଶ୍ୱାସ । ସେ କହନ୍ତି, ଭଗବାନଙ୍କ ଇଚ୍ଛା ବ୍ୟତିରେକେ ଦୁବଘାସ ସୁଦ୍ଧା ହଲେ ନାହିଁ । ସେ ଯାହା ଲେଖନ୍ତି ତାଙ୍କର ବିଶ୍ୱାସ, କିଏ ଜଣେ ତାଙ୍କୁ ଡାକଇଦିଏ । ବ୍ରିଟିଶକେଶରୀଙ୍କୁ ସେ କେବେହେଲେ ଡରନ୍ତି ନାହିଁ; ମାତ୍ର ସେ ଡରନ୍ତି ତାଙ୍କ ସ୍ତ୍ରୀ କସ୍ତୁରୀବାଈଙ୍କୁ ।

କସ୍ତୁରବାଈ କିଛି ପାଠ ପଢ଼ି ନ ଥିଲେ । ଗୁଜରାଟୀ ଖୁବ୍ ଅଳ୍ପ ଜାଣି ନ ଥିଲେ । ମାତ୍ର ତାଙ୍କ ସ୍ନେହ ସେବା ଓ ଭକ୍ତି ନିକଟରେ ଗାନ୍ଧିଙ୍କର ଭୟ ଥିଲା ।

ଜେଲ୍-ଜୀବନ୍, ଅଭିଯୋଗ-ଅପମାନ ସବୁ ସେ ସହିଥିଲେ ଦେଶ ପାଇଁ । ଭାରତର ସ୍ୱାଧୀନତା ପାଇଁ ସେ ଦରିଦ୍ରର ସଖା ନିଃସହାୟର ସହାୟ । ଭାରତର କୃଷକ ଯେମିତି କୁଡ଼ିଆରେ ରହି ଆଣ୍ଠୁ ପର୍ଯ୍ୟନ୍ତ ଲୁଗା ପିନ୍ଧେ; ଗାନ୍ଧି ସେହିପରି ପିନ୍ଧୁଥିଲେ । ପୃଥିବୀରେ ଏ ମହତ୍ ଆଦର୍ଶ ଆଜି କୌଣସି ନେତାଙ୍କର ନାହିଁ । ଅବଶ୍ୟ ଗାନ୍ଧିଙ୍କୁ ସାଧାରଣ ନେତାଙ୍କ ସହିତ ତୁଳନା କରିବା ଅନ୍ୟାୟ । ଖାଲି କଥା କହି, ସତ୍ୟ ଓ ଅହିଂସାର ସାଧନା କରି ପୃଥିବୀର ସର୍ବଶକ୍ତିମାନ୍ ଏକ ଶକ୍ତିକୁ ସେ ଏ ଦେଶରୁ ଘଉଡ଼ାଇ ଦେଲେ । ଶହ ବର୍ଷର ଲୁହାର ଶିକୁଳି ଲୋକଙ୍କ ହାତରୁ ଖସାଇ-ଦେଲେ । ପରର ଉପକାର କରି ଗଡ୍‌ସେର ଗୁଳିରେ ଭୂମିରେ ଲୋଟିଲେ । 'ହେ ରାମ' କହି ହାତ ଯୋଡ଼ିଲେ । ଏହି ସ୍ୱାର୍ଥପର ଦୁନିଆରେ ସେ ନିଜ ପାଇଁ କିଛି ଚାହିଁ ନ ଥିଲେ । ପରର ଭଲ ପାଇଁ ପ୍ରାଣ ଦେବାକୁ ସେ ଅନାଇ ବସିଥିଲେ ।

ଜାନୁଆରୀ ୩୦, ୧୯୪୮, ସେଦିନ ଶୁକ୍ରବାର । ସନ୍ଧ୍ୟା ୪ଟା ୩୦ରେ ଗାନ୍ଧି ତାଙ୍କର ଶେଷ ଭୋଜନ କରି ଆଭା ଓ ମନୁ ଗାନ୍ଧିଙ୍କ କାନ୍ଧରେ ହାତ ଦେଇ ବିରଳା ଭବନରୁ ପ୍ରାର୍ଥନା ପାଇଁ ବାହାରିଗଲେ । ସେହି ଦିନ ତାଙ୍କର ଶେଷ ପ୍ରାର୍ଥନା । ମୃତ୍ୟୁବେଳେ କ୍ଷୀଣକଣ୍ଠରୁ ସ୍ୱତଃ ବାହାରି ପଡ଼ିଲା, 'ହେ ରାମ' । ସତ୍ୟ ନ୍ୟାୟର ଶେଷ ପ୍ରଦୀପ ଲିଭିଗଲା । ଗାନ୍ଧିଙ୍କ ପାଇଁ ଭାରତ ସରକାର

ସମବେଦନା ପୂର୍ଣ୍ଣ ୩,୪୪୧ ଟେଲିଗ୍ରାମ ପାଇଲେ । ପୃଥିବୀର ସବୁ କୋଣରେ ଟେଲିଗ୍ରାମ ବାଜି ଉଠିଲା ।

ଇଂଲଣ୍ଡର ରାଜା, ଆମେରିକାର ରାଷ୍ଟ୍ରପତି, ଚୀନର ଚିଆଙ୍ଗକାଇସେକ୍, ଫ୍ରେଞ୍ଚ ପ୍ରେସିଡେଣ୍ଟ, ଆଇନଷ୍ଟାଇନ, ଆନ୍ଦ୍ରେ ଗ୍ରୋମିକୋ ସମସ୍ତଙ୍କ ନିକଟରୁ ଶୋକବାର୍ତ୍ତା ଛୁଟି ଆସିଲା । କାଲିଫର୍ଣ୍ଣିଆର ଜଣେ ତେର ବର୍ଷର ବାଳିକା ଓ ଫ୍ରାନ୍ସର ଜଣେ ସାମ୍ୟବାଦୀ ଲେଅଁ ବ୍ଲୋ ଯାହା କହିଲେ, ପୃଥିବୀର ଆଉ ଅନେକ ହି ସେଇ କଥା କହିଲେ । କଥାଟି ଏହି—"ମୁଁ ଗାନ୍ଧିଙ୍କୁ କେବେ ଦେଖି ନାହିଁ, ତାଙ୍କ ଭାଷା ଜାଣେ ନାହିଁ କିମ୍ବା ତାଙ୍କ ଦେଶରେ କେବେ ମୋ ପାଦ ପଡ଼ିନାହିଁ, ତଥାପି ମୋତେ ଲାଗୁଛି ସତେ ଯେମିତି ମୁଁ ମୋର କୌଣସି ନିକଟସମ୍ପର୍କୀୟ ଲୋକଙ୍କୁ ହରାଇଛି ।

ଆନ୍ତର୍ଜାତିକ ଅନୁଷ୍ଠାନ ତାଙ୍କୁ ସମ୍ମାନ ଦେବା ପାଇଁ ପତାକା ନୁଆଇଁ ଦେଇଥିଲେ । ସାରା ମଣିଷ ଜାତି ତାର ପତାକା ନୁଆଇଁ ଦେଇଥିଲା ।

# ବିଲାତର ବିଶିଷ୍ଟ ନେତା ଚର୍ଚ୍ଚିଲ୍

ମା ଆମେରିକାନ୍ ବାପ ଇଂରେଜ, ନିଜେ କିନ୍ତୁ ଇଂରେଜ ଜାତିର ସର୍ବଶ୍ରେଷ୍ଠ ନେତା । ଖାଲି ନେତା ନୁହନ୍ତି—ନେତା ତ ଅନେକ ଅଛନ୍ତି—ସେ ସୈନ୍ୟ, ସେ ସେନାପତି ସେ ବୈମାନିକ, ଲେଖକ, ପାରିଷଦ, ବିଶାରଦ, ଯାହାକହୁ ତୁଅନ୍ତୁ । ଆଫ୍ରିକାର ମରୁଭୂମିରେ ସେ ବୁଲିଛନ୍ତି, ବଙ୍ଗଳାର ବଣ ପାହାଡ଼ରେ ସେ ଘୂରିଛନ୍ତି । ଗତ ତିରିଶ ବର୍ଷ ହେଲା ଖାଲି ବିଲାତକୁ ନୁହେଁ ପୃଥିବୀକୁ ସେ ହାତରେ କୁଣ୍ଢେଇ ଧରି ନଚାଇଛନ୍ତି । ତାଙ୍କ ନା ଚର୍ଚ୍ଚିଲ--ଉଇନ୍‌ଷ୍ଟନ ଚର୍ଚ୍ଚିଲ । ଆମେ ତାଙ୍କୁ କହୁ ନଅାଁ ଗିଳା ଚର୍ଚ୍ଚିଲ । ବୁଡ଼ି ଯାଉଥିବା ବିଲାତକୁ ସେ ଟେକ ରଖିଥିଲେ । ସେ ବିଲାତର ପ୍ରଧାନମନ୍ତ୍ରୀ ଥିବାବେଳେ ଲଣ୍ଡନର ଡାଉନିଂ ଷ୍ଟ୍ରୀଟ୍‌ରେ ଦଶ ନମ୍ବର ଘରେ ରହୁଥିଲେ ।

ଆଜିର ପୃଥିବୀରେ ଖୁବ୍ ଅଳ୍ପ ଲୋକ ଅଛନ୍ତି, ଯାହାଙ୍କ ଜୀବନରେ ଏତେ ବିସ୍ମୟକର ଘଟଣା ଘଟିଛି ଓ ଜୀବନଟାକୁ ଯେ ପଲେ ପଲେ ଉପଭୋଗ କରିଛନ୍ତି । ୧୮୭୪ ନଭେମ୍ବର ୩୦ରେ ସେ ଜନ୍ମ ହୋଇଥିଲେ; କିନ୍ତୁ ଛବିଶ ବର୍ଷ ନ ପୂରୁଣୁ ବିଲାତ ପାର୍ଲିଆମେଣ୍ଟର ମେମ୍ବର ହେଲେ । ଖାଲି ସେତିକି ନୁହେଁ, ସେବେଠୁ ଅର୍ଦ୍ଧଶତାବ୍ଦୀକାଳ ସେ ରାଜମାଡ଼ି ବସିଥିଲେ । କେତେ ଉଦ୍ଧ ଯାଉଛନ୍ତି, କିନ୍ତୁ ଶତୀ ଅଛନ୍ତି । ସତେ ଯେମିତି ବିଲାତ ପାର୍ଲିଆମେଣ୍ଟ ତାଙ୍କ ବାପ ଅଜାଙ୍କ ଜମିଦାରୀ । ପୃଥିବୀରେ ଆଜି କେହି

ଏତେକାଳ (୫୦ ବର୍ଷ) ପାର୍ଲିଆମେଣ୍ଟ ମେମ୍ବର ହୋଇଛନ୍ତି କ ନା ସନ୍ଦେହ ।

ଚର୍ଚ୍ଚିଲ୍‌ଙ୍କ ଦେହ ଯେମିତି ଶକ୍ତ ଓ ମୋଟା, କଣ୍ଠ ବି ସେମିତି ମୋଟା ଓ ଗମ୍ଭୀର । ଚର୍ଚ୍ଚିଲ୍‌ଙ୍କ ସିଗାରେଟ୍ ପାଇପ୍ ହିଟ୍‌ଲରଙ୍କ ଜଣପର ପୃଥିବୀବିଖ୍ୟାତ । ଲୋକେ କହନ୍ତି, ଚର୍ଚ୍ଚିଆନ୍ ପାଇପ୍ । ରେଡ଼ିଓରେ ତାଙ୍କ ବକ୍ତୃତା ଶୁଣିଲେ ଜଣାପଡ଼ିବ, ସତେ ଯେମିତି ରେଡ଼ିଓର ଯନ୍ତ୍ରପାତି ତାଙ୍କ ବକ୍ତୃତାରେ ଥରିଯାଉଚି । ପୃଥିବୀର ଅପ୍ରତିଦ୍ୱନ୍ଦୀ ବକ୍ତା ଲେଖକମାନଙ୍କ ଭିତରୁ ସେ ଜଣେ । ଏ ଗୌରବ ଖୁବ୍ କମ୍ ପ୍ରଧାନମନ୍ତ୍ରୀଙ୍କର ଥାଇପାରେ । ଆମେରିକାରେ ଥରେ ସେ ୫୫ଟି ବକ୍ତୃତା ଦେଇଥିଲେ । ପ୍ରତ୍ୟେକ ବକ୍ତୃତାର ଦାମ ତିନିହଜାର ଟଙ୍କା । ମୋଟରେ କେତେ ଟଙ୍କା ହେଲା ହିସାବ କରନ୍ତୁ । ଇଂରେଜଜାତି ଉପରେ ତାଙ୍କର ପ୍ରଭାବ ଅସୀମ । ସେ ପ୍ରଧାନମନ୍ତ୍ରୀ ନ ଥିଲାବେଳେ ମଧ୍ୟ ଠିକ୍ ସମୟରେ ବନ୍ଦରରେ ପହଞ୍ଚି ନ ପାରିଲେ ତାଙ୍କ ପାଇଁ ବଡ଼ ବଡ଼ ଜାହାଜ ବି ଅଟକିଯାଏ ।

ଆଜୀବନ ସେ ଦୁଃସାହସୀ । ତା ନ ହେଲେ ସେ ଗାନ୍ଧି ମହାତ୍ମାଙ୍କୁ କହିଥାନ୍ତେ, "ଲଙ୍ଗଳା ଫକୀର", କେତେ ଦମ୍ ହେଲେ ମଣିଷ ଜିଭରୁ ଏକଥା ବାହାରନ୍ତା ! ଅଙ୍କ ନାଁ ଧରିଲେ ଯା ପିଳେଇ ପାଣି, ତାଙ୍କର ହାତରେ ଷ୍ଟିରବର୍ଷ କାଳ ରହିଚି ସରକାରଙ୍କ ଟ୍ରେଜେରୀ ଉଣ୍ଡିଲା । କମ୍ ଦୁଃସାହସ ନୁହେଁ ତ ! ପିଲାଦିନୁ ତାଙ୍କ ଜୀବନରେ ପ୍ରଧାନ ସ୍ୱପ୍ନ ଥିଲା ସୈନ୍ୟ ହେବା । ପିଲାଦିନେ ଥରେ ଥରେ ସେ କୁଣ୍ଢେଇ ସୈନ୍ୟବାହିନୀ ସଙ୍ଗେ ସାଙ୍ଗହୋଇ ଖେଳୁଥିଲେ ।

ଯା'ର ମନ ଯେମିତି, ତାର ଫଳ ସେମିତି । ପରେ ସେ ବିଲାତର ବିଖ୍ୟାତ ସାଣ୍ଡ୍‌ହର୍ଷ୍ଟ୍ ମିଲିଟାରି କଲେଜରୁ ପାସ୍ କଲେ, ତାପରେ ବ୍ରିଟିଶ ସେନାବାହିନୀରେ ଯୋଗ ଦେଇ ବ୍ରିଟିଶ ସୈନ୍ୟମାନଙ୍କ ସଙ୍ଗେ ବଙ୍ଗଳାରେ ଲଢ଼ାଇ କରିଥିଲେ । କିଚନରଙ୍କ ସାଙ୍ଗରେ ସୁଡ଼ାନ ମରୁଭୂମିରେ ବି ଲଢ଼ୁଥିଲେ । ବିଲାତର ଚର୍ଚ୍ଚିଲ ବଙ୍ଗଳାରେ ପ୍ରଥମେ ସୈନ୍ୟଜୀବନ କଟାଇଥିଲେ । ସେଥିପାଇଁ ବୋଧହୁଏ ଭାରତକୁ ସ୍ୱାଧୀନତା ନ ଦେବା ପାଇଁ ସେ ନଅଁ ଗିଳା ମାଡି ଧରିଥିଲେ । ମୋଟ ଉପରେ ଦୁଃସାହସୀ ନା । ସେତିକ ତାଙ୍କ ଚରିତ୍ରରୁ ଶିଖିବା କଥା । ତାଙ୍କ ଦୁଃସାହସ ଯୋଗୁଁ ୧୯୦୦ ମସିହା ବେଳକୁ ସମସ୍ତେ ତାଙ୍କ ନାଁ ଜାଣି ସାରିଥିଲେ । ସେ ଏମିତି ଜଣାଶୁଣା ହୋଇ ଯାଇଥିଲେ ଯେ ଲୋକେ ତାଙ୍କୁ ଭୋଟ ଦେଇ ପାର୍ଲିଆମେଣ୍ଟର ମେମ୍ବର କରିଦେଲେ । ସାଣ୍ଡହର୍ଷ୍ଟର ସିପାହୀ ହେଲେ ପାର୍ଲିଆମେଣ୍ଟର ମେମ୍ବର, ଶେଷରେ ବିଲାତର ପ୍ରଧାନମନ୍ତ୍ରୀ ।

ତାଙ୍କ ଦୁଃସାହସ କି ପ୍ରକାର ହୋଇପାରେ; ତାର ଏକ ନମୁନା ଦେଖାଯାଉ । ଆଫ୍ରିକାରେ ୧୮୯୯ ମସିହାରେ ବୁଅର ଯୁଦ୍ଧ ଲାଗିଥିଲା । ବିଲାତରେ 'ମର୍ଣ୍ଣିଂ ପୋଷ୍ଟ' କାଗଜ ତାଙ୍କୁ ସମ୍ବାଦ-ଦାତା ହିସାବରେ ଦିନକୁ ଶହେଟଙ୍କା ଦରମା ଦେଇ ଆଫ୍ରିକା ପଠାଇ ଦେଇଥିଲା । ଖାଲି ସମ୍ବାଦ ଦେଇ ବିଲାତରେ ସେ ଗୁଞ୍ଜିଲି ସୃଷ୍ଟିକରି ନ ଥିଲେ, ତାଙ୍କ କାମହାବ ସେ ଲୋକଙ୍କୁ ବେଶି ଚମକାଇ ଥିଲେ । ଶତ୍ରୁ ସୈନ୍ୟଙ୍କ ଗୁଳିବର୍ଷଣ ଭିତରେ ଜୀବନ ପାଣିଛଡ଼ା କରି ସେ ଶତ୍ରୁ ରାଜ୍ୟରେ ବୁଲୁଥିଲେ । ବୁଅରମାନଙ୍କ ଦ୍ୱାରା ଧରାହୋଇ ଜେଲ ଖଟିଲେ; ମାତ୍ର କେତୁଦିନ ପରେ ଜେଲରୁ ଖସି ପଳାଇଲେ । ବୁଅରମାନଙ୍କ ମୁହଁ କଳା ପଡ଼ିଗଲା; କାରଣ

ଅସଲ ଲୋକଟା ହାତରୁ ଖସି ପଳାଇଲେ । ଜଣେ ଇଂରେଜୀ ଲର୍ଡ଼ଙ୍କ ପୁଅଟି ! ଗୋଟିଏ ପିମ୍ପୁଡ଼ି ନ ମାରି ଗୋଟିଏ ହାତୀ ମାରିଥିଲେ ନାମ ଛୁଣ୍ଡିଥାନ୍ତା । ସେ ମରିଥାନ୍ତୁ ବା ଜୀଇଥାନ୍ତୁ, ଚର୍ଚ୍ଚିଲଙ୍କୁ ଆଣିଦେବା ନିମନ୍ତେ ବୁଅରମାନେ ଲକ୍ଷ ଲକ୍ଷ ଟଙ୍କାର ପୁରସ୍କାର ଯାଚିଲେ । କିନ୍ତୁ ଚର୍ଚ୍ଚିଲ କି ଡରିବା ଲୋକ ! ଜୀବନ ନେଇ ଶତ୍ରୁ ରାଜ୍ୟରେ ଘୂରି ବୁଲିଲେ—ବଣ-ପାହାଡ଼, କାନ୍ତାର—କନ୍ଦର । କେତେବେଳେ ଗାଡ଼ିରେ, କେତେବେଳେ ଗୋଡ଼ରେ । (ମୁଣ୍ଡ ଉପରେ ଶାଗୁଣା ଉଡ଼ୁଥାନ୍ତି ବିଚରା ଛଡ଼ିଗଲେ ଖାଇପାରନ୍ତେ;) କିନ୍ତୁ ଚର୍ଚ୍ଚିଲ କି ପଡ଼ିବା ଲୋକ ! ସେ ବଞ୍ଚିଗଲେ । ଖାଲି ବଞ୍ଚିଗଲେ ନାହିଁ ତ 'ମର୍ଣ୍ଣିଂ ପୋଷ୍ଟ' ଖବରକାଗଜର ମହତ୍ତ୍ୱ ବଢ଼ାଇଦେଲେ । ଅଙ୍ଗରେ ଯାର ଅନୁଭୂତି, ହାତରେ ଯାର କଲମ, ଗୁଅଳ୍ପ ସୃଷ୍ଟି କରିବା ତା ପକ୍ଷରେ ଅତି ସାମାନ୍ୟ କଥା । 'ମର୍ଣ୍ଣିଂପୋଷ୍ଟ' କାଗଜରେ ତାହାଙ୍କର ଗଳ୍ପ ପଢ଼ିଲେ ଦେହ ଉଲ୍ଲସିବ, ଆଖି ଝସିପଡ଼ିବ—ଆଫ୍ରିକା ଜଙ୍ଗଲରେ ଇଂରେଜୀ ପିମ୍ବର କାହସାଦ, ଜାତିର ସମ୍ମାନ, ଦେଶର ଟେକ । ଚର୍ଚ୍ଚିଲ୍ ଯେତେବେଳେ ଦେଶକୁ ଫେରନ୍ତି, ଜାତିର ବୀର ବୋଲି ତାଙ୍କ ପାଇଁ ଲୋକେ ସ୍ୱାଗତ ସଙ୍ଗୀତ ଗାଇଲେ, କଥା ଶୁଣିବା ପାଇଁ ତାଙ୍କର ପାଟିରୁ ଅନାଇ ରହିଲେ । ସେତିକିରେ ଛବିଶ ବର୍ଷର ଚର୍ଚ୍ଚିଲ୍ ପାର୍ଲିଆମେଣ୍ଟରେ ପଶିଲେ । ଯାହା କହନ୍ତି ସାହସ କଲେ ମରି, ସାହସ କଲେ ତରି, ସାହସ କଲେ ଘର ଦୁଆର ଜଳି ଜଆଁଟା ମିଛ ନୁହେଁ ।

ସାରା ଜୀବନ ଚର୍ଚ୍ଚିଲ୍ ହାତ ମାରି ଦେଇଛନ୍ତି, "ଝପଟି ଦେଖି ଡରି ଯାଅନା । କାରଣ ଡରିଲେ ଡର ମାଡ଼ି ଆସିବ । ବନ୍ଧୁତା କେବା ପାଇଁ ସେ ଯେତେବେଳେ ଆମେରିକାରେ ଥିଲେ

ବାସ୍ତବ ପୋଲିସ ଜାଣିପାରିଲେ ଯେ ଚର୍ଚ୍ଚିଲଙ୍କୁ ମାରି ଦେବା ପାଇଁ ଆମେରିକାରେ ଏକ 'ହତ୍ୟାକାରୀ ସଂଘ' ଗଢ଼ା ହୋଇଛି । ଆମେରିକା ପୋଲିସ ବକ୍ତୃତା ବନ୍ଦକରି ଦେବାକୁ ଚର୍ଚ୍ଚିଲ୍‌ଙ୍କୁ ଅନୁରୋଧ କରିଥିଲେ, ମାତ୍ର ସେ ମନା କଲେ । ତାଙ୍କର ବିଶ୍ୱାସ ବିପତ୍ତିର ସମ୍ମୁଖୀନ ହେଲେ ବିପତ୍ତି ଅଧା କମିଯାଏ । ପଛଘୁଞ୍ଚା ସିନା କାପୁରୁଷ ପଣ ।

ଚର୍ଚ୍ଚିଲ ଯେତେବେଳେ ୧୯୧୧ ବ୍ରିଟିଶ୍ ନୌବାହିନୀରେ ଥିଲେ ସେତେବେଳେ ସେହି ବିଭାଗରେ ମୋଟେ ଛ'ଟି ଉଡ଼ାଜାହାଜ ଥିଲା । ଆଜକାଲି ପରି ଲୋକେ ସେତେବେଳେ ଆକାଶରେ ଉଡ଼ୁନ ଥିଲେ । ସେତେବେଳକୁ ମୋଟେ ଆଠବର୍ଷ ହେଲା ଲୋକେ ଉଡ଼ାଜାହାଜରେ ଉଡ଼ି ଶିଖିଥାନ୍ତି । ଆକାଶରେ ଉଡ଼ିବା ମାନେ ମୁଣ୍ଡ ପାଣି ଛଡ଼ାଇବା; ମାତ୍ର ମଣିଷ ମଲେ ସିନା ପ୍ରକୃତ ଯୁଦ୍ଧ । ଚର୍ଚ୍ଚିଲ୍‌ଙ୍କୁ ଦୁଃସାହସ ଯୁଦ୍ଧେ ନାହିଁ । ବାରମ୍ବାର ସେ ନିଜେ ଉଡ଼ାଜାହାଜ ଚଳାଇ ଆକାଶରେ ଉଡ଼ୁଥିଲେ । କେତେଥର ଯେ ଦୁର୍ଘଟଣା ଘଟିଛି, ତାର ଠିକଣା ନାହିଁ; କିନ୍ତୁ ସବୁଥର ସେ ଟିକକରେ ରକ୍ଷା ହୋଇଯାନ୍ତି । ଉଡ଼ାଜାହାଜ ଚଢ଼ିବା ପାଇଁ ସରକାର ତାଙ୍କୁ ମନା କରିଦେଲେ; ମାତ୍ର ଯେଉଁ ପକ୍ଷୀ ଉଡ଼ିଛି, ତାକୁ ପଞ୍ଜୁରୀରେ ରଖିହେବ କଏ ? ଆକାଶର ମୁକ୍ତବାୟୁରେ ସେ ନିଶ୍ୱାସ ନେଇଛି, ପୃଥିବୀର ଗନ୍ଧ ତାକୁ ଭଲ ଲାଗିବ କେତେବେ ? ଚର୍ଚ୍ଚିଲ ଜାହାଜ ନ ମାନି ଉଡ଼ିଲେ ଓ ବ୍ରିଟିଶ ଉଡ଼ାଜାହାଜ ବାହିନୀକୁ ଶକ୍ତିଶାଳୀ କରିଦେଲେ ।

ଏଥିରୁ ବେଶ୍ ଜଣାପଡ଼େ, ଚର୍ଚ୍ଚିଲ କେଡ଼େ ଜିଦ୍‌ଖୋର । କାମ ଶେଷ ନ କଲେ ଯୁଦ୍ଧ ଭୁଲିଯିବା ଲୋକ ସେ ନୁହନ୍ତି । ସ୍କୁଲରେ

ପାଠ ପଢ଼ୁଥିଲାବେଳେ ଲାଟିନ୍, ଗ୍ରୀକ୍ ଓ ଅଙ୍କ ତାଙ୍କୁ ମୋଟେ ଆସୁ ନ ଥିଲା । କ୍ଲାସର ସବା ତଳେ ସେ ଥିଲେ । କେହି କଳ୍ପନା କରି ନ ଥିଲା ଚର୍ଚ୍ଚିଲ୍ ଜୀବନରେ କିଛି ହେବେ । ଥର ଥର କରି ସେ ତିନଥର ଫେଲ ହେଲେ; ମାତ୍ର ଚତୁର୍ଥଥର ପାସ କଲେ । ଏହା ତାଙ୍କର ବିଜୟ ନୁହେଁ ଯେ ତାଙ୍କ ଜିଦ୍‌ର ବିଜୟ !

ଭାରତରେ ଯେତେବେଳେ 'ସୈନ୍ୟ ଭାବରେ ସେ ଥିଲେ, ତେବେ ହଠାତ୍ ତାଙ୍କ ମୁଣ୍ଡରେ ଖିଆଲ ପଶିଲା, ସେ କଲେଜରେ ତ କିଛି ପଢ଼ି ନାହାନ୍ତି, ବର୍ତ୍ତମାନ ପଢ଼ିବେ । ମା'ଙ୍କ ପାଖକୁ ଚିଠି ଲେଖିଲେ ବହି ପାଇଁ । ଅର୍ଥଶାସ୍ତ୍ର, ଇତିହାସ, ଜୀବନୀ, ଦର୍ଶନ, କାବ୍ୟ, ନାଟକ—ଶହ ଶହ ପୁସ୍ତକ ଆସି ଗଦା ହେଲା । ଆମ ଦେଶରେ ଦ୍ୱିପହରେ ଯେଉଁ ଖରା, ସେଥିରେ ଶୀତ ଦେଶରେ ସାହେବ ଲୋକେ ଘାଉ ହୋଇଯିବା କଥା; କିନ୍ତୁ ଦ୍ୱିପହରେ ଯେତେବେଳେ ସବୁ ସିପାହୀ ଶୋଇପଡ଼ନ୍ତି, ଚର୍ଚ୍ଚିଲ ଖାନଦାନ ହୋଇ ପ୍ଲାଟୋଠୁ ପୋପ୍ ପର୍ଯ୍ୟନ୍ତ ସବୁ ପଢ଼ନ୍ତି । କି ଉଦ୍ୟମ ଚେଷ୍ଟା !

ଯା ଦେହରେ ସୈନ୍ୟର ବଳ ଓ ମନରେ ସେନାପତିର କୌଶଳ ଅଛି, ସେ କେବେ ଅଳସ ହୋଇ ପାରେନା । ସେଥିପାଇଁ ଚର୍ଚ୍ଚିଲ ପ୍ରଧାନମନ୍ତ୍ରୀ ହେଲେ ବି ଜୀବନ ଶେଷରେ କେବେ ଘୁମେଇ ନାହାନ୍ତି । ସେ ଦିନକୁ ଷୋଳ ସତର ଘଣ୍ଟା କାମ କରନ୍ତି । ଉଆଏ ସେକ୍ରେଟେରୀ କାମ କରି କରି ବେଦମ୍ ହୋଇଯାନ୍ତି । କିନ୍ତୁ ସକାଳୁ କେବେ ସେ ସାଢ଼େ ଦଶ ପୂର୍ବରୁ ଉଠନ୍ତି ନାହିଁ । ତା ଅର୍ଥ ନୁହେଁ ଯେ ସେ ଶୋଇ ଘୁଙ୍ଗୁଡ଼ି ମାରୁଥାନ୍ତି । ସିଗାରେଟ ପାଇପ୍ କାମୁଡ଼ି ସେ ବିଛଣାରେ

ପଢ଼ୁଥାନ୍ତି, ଫୋନ୍ କରୁଥାନ୍ତି, ଟେଲିଗ୍ରାମ ପଠଉଥାନ୍ତି, ଖବରକାଗଜ ଦେଖୁଥାନ୍ତି, ଷ୍ଟେନୋଦ୍ୱାରା ଚିଠି ଲେଖାଉଥାନ୍ତି । ବିଛଣା ଛାଡ଼ିଲା ବେଳକୁ ଦୁନିଆର ଅଧା କାମ ତାଙ୍କର ସରିଥାଏ । ସନ୍ଧ୍ୟାରେ ରାତ୍ରିଭୋଜନ ପରେ ରାତି ଅଧେ ପର୍ଯ୍ୟନ୍ତ ବରାବର ସେ କାମରେ ଲାଗିଥାନ୍ତି ।

ହିଟଲରର ରାକ୍ଷସ ଦିନେ ଏ ଦୁନିଆକୁ ଗିଳି ପକାଇବ, ଚର୍ଚ୍ଚିଲ୍ ତାହା ବହୁତ ଆଗରୁ ଜାଣି ପାରିଥିଲେ । ସେଣୁ ୧୯୩୩ରୁ ୧୯୩୯ ଛ’ ବର୍ଷକାଳ ରଣସଜ୍ଜା କରିବାକୁ ଦେଶକୁ ଡାକ ଦେଲେ; ମାତ୍ର ଦେଶ ଶୁଣିଲା ନାହିଁ, ବରଂ ଚର୍ଚ୍ଚିଲ ଯୁଦ୍ଧଖୋର ବୋଲି ସମସ୍ତେ ଘାଣ୍ଟିକଲେ । ସେ ଜାଣୁଥିଲେ, ହିଟ୍ଲର ତାଙ୍କ ଗୁଳିଗୁଳା ସବୁ ଦିଆର ଉଭିରୁ ଲଣ୍ଡନରେ ବୋମା ବର୍ଷା କରିବ, ବ୍ରିଟିଶ୍ ନୌବାହିନୀକୁ ଛାରଖାର କରିଦେବ ଓ ପୃଥିବୀକୁ ପାଦତଳେ ଲୋଟାଇବ । ଲୋକେ ଯଦି ସେତେବେଳେ ତାଙ୍କ କଥା ଶୁଣିଥାନ୍ତେ, ତେବେ ଦ୍ୱିତୀୟ ମହାସମରର ପିଲାଖେଳ ଘର ଭାଙ୍ଗି ଯାଇଥାନ୍ତା, କିନ୍ତୁ ଦୁନିଆର ଗତି ଏମିତି ଯେ ନ ଠନ୍ତୁଲେ କେହି ଘର ଘୁଞ୍ଚଣି କରନ୍ତି ନାହିଁ । ଇଂରେଜୀ ଲୋକେ ବା କରିଥାନ୍ତେ କଅଣ ?

# ଇସ୍ପାତ ମଣିଷ ଷ୍ଟାଲିନ

ଆଜି ଜଣେ ଲୋକର ନା ଧରିଲେ କେତେ ଡରନ୍ତି, କେତେ ଥରନ୍ତି, କେତେ ବି ଆନନ୍ଦରେ ନାଚନ୍ତି । ସେ ଥିଲେ ପୃଥିବୀର ଛଅ ଭାଗରୁ ଭାଗେ ରାଜ୍ୟର ଭାଗ୍ୟବିଧାତା । କୋଡ଼ିଏ କୋଟି ଲୋକଙ୍କର ଧନଜୀବନ ତାଙ୍କରି ହାତରେ, ଅଥଚ ସେ କୌଣସି କୋଟିପତି ବା ମନ୍ତ୍ରୀ-ମହାଜନଙ୍କର ପୁଅ ନୁହନ୍ତି—ତାଙ୍କ ବାପ ମା ଜଣକର କଣା ଲୁଗାଟା । ଜମି ବର୍ଷାବେଳେ ସେମାନେ ମାଟି ସାଙ୍ଗରେ ବକା ହୋଇ ଯାଇଥିଲେ ।

ଆପଣ ତାଙ୍କୁ ଘୃଣା କରିପାରନ୍ତି, ପ୍ରଶଂସା କରି ପାରନ୍ତି, ଯାଏ ଆସେ ନା; ମାତ୍ର ସେ ବିରାଟ ବ୍ୟକ୍ତିଙ୍କୁ କଦାପି ଉପେକ୍ଷା କରିପାରିବେ ନାହିଁ, ଏକଥା ନିରାଟ ସତ । ଆଖିରେ ଅନ୍ଧପୁଟୁଳି ବାନ୍ଧି ଦୁନିଆରେ ସୂର୍ଯ୍ୟ ନାହାନ୍ତି ବୋଲି କହିବା ଯାହା, ସେହି ମହାପୁରୁଷଙ୍କ ମହାତ୍ମ୍ୟକୁ ଅବମାନନା କରିବା ସେୟା । କୋଟି କୋଟି ନିଜ ଲୋକଙ୍କୁ ଗୋଡ଼ରେ ଛିଡ଼ା କରାଇବା ପାଇଁ ଏବଂ ସ୍ୱାଧୀନତା ମନ୍ତ୍ର ଶିଖାଇବା ପାଇଁ ଯେ ଜୀବନସାରା ପଣ କରିଥିଲେ, ତାଙ୍କୁ ଏ ଦୁନିଆରେ ସମ୍ମାନ ନ ଦେଖାଇ କେଉଁ ଲୋକ ରହିପାରେ ? ଅସମ୍ଭବ ! ତାଙ୍କ ନାଁ ହେଉଛି ଷ୍ଟାଲିନ । ଷ୍ଟାଲିନ୍ କହିଲେ ନ ଜାଣେ କିଏ ? ଲୁହାର ମଣିଷ ଷ୍ଟାଲିନ୍ । ରୁଷିଆ ଭାଷାରେ 'ଷ୍ଟାଲ' ମାନେ ଇସ୍ପାତ ଲୁହା । ସତରେ ସେ ଇସ୍ପାତ ଲୁହା—ହଜିଯିବ ପଛେ ଭାଙ୍ଗିଯିବ ନାହିଁ ।

ପୃଥିବୀ ଇତିହାସର ସନ୍ଧି ସମୟରେ ଏହି ୧୯୫୩ ରେ ସେ ମରିଗଲେ । ତାଙ୍କର ଜନ୍ମ ୧୮୭୯ରେ । କୃଷ୍ଣସାଗର ଓ କାସ୍ପିୟାନ ସାଗର ମଝିରେ ଜର୍ଜିଆ ଷ୍ଟେଟ । ସେହି ରାଜ୍ୟରେ ଲୁହାଖଣି ନିକଟରେ ଗୋଟିଏ କୁଡ଼ିଆ ଘରେ ଜନ୍ମ ହୋଇଥିଲେ ଯୋଗଜନ୍ମା ଷ୍ଟାଲିନ୍ । ସେହି କୁଡ଼ିଆଟି ବ ସେମାନଙ୍କର ନିଜର ନୁହେଁ—ତିନିଟଙ୍କା ଭାରଣା ଭଡ଼ାରେ ରଖିଲେ । ତିନି ଟଙ୍କା ଦାଉ ଅଣାକୁ କେମିତି ବଡ଼ିଆଘର ହୋଇଥିବ, ଅନୁମାନ କରନ୍ତୁ ତ ! କିନ୍ତୁ ସେହି ମାଟିର ପିଲା ପୁଣି ମଣିଷ ହେଲେ । ରୁଷିଆ ରାଜାଙ୍କର ମଣିମାଣିକ୍ୟ କୋଟି ମୂଲ୍ୟର କୋଠା ମହଲ ତାଙ୍କୁ ପସନ୍ଦ ହେଲାବେଳେ ସେ ଗୋଡ଼ରେ ଆଡ଼େଇଦେଲେ । ରୁଷିଆର ମୁକୁଟହୀନ ସମ୍ରାଟ୍ ଷ୍ଟାଲିନ୍ ରାଜନଅର ତଳେ ରାଜାଙ୍କ ଚାକର ରହୁଥିବା ଗୋଟିଏ କୁରକୁରିଆ ଘରେ ରହିବାକୁ ପସନ୍ଦ କଲେ । କି ତ୍ୟାଗ ! ତା ନ ହେଲେ ଷ୍ଟାଲିନ୍ ନାଁରେ ଦୁନିଆ ପଡ଼ ଥାନ୍ତା ଉଠୁଥାନ୍ତା କାହିଁକି ? ଯେ ଭୋଗ ଖୋଜେ ତାକୁ ମିଳେ ନାହିଁ; ମାତ୍ର ଭୋଗକୁ ଯେ ଆଡ଼େଇ ଦିଏ, ତାକୁ ସେ ଗୋଡ଼ାଇଯାଏ ।

ଲୁହାର ଷ୍ଟାଲିନ୍ ଯେତେବେଳେ ପିଲା, ତାଙ୍କ ବାପା ଭାବୁଥିଲେ ଷ୍ଟାଲିନ୍ ମୋଚିକାମ କରିବେ, ଯୋତା ସିଲେଇ କରିବେ, ମାତ୍ର ମା'ଙ୍କର ଇଚ୍ଛା ଥିଲା, ସେ କୌଣସି ମନ୍ଦିରରେ ପୂଜାରୀପଣ୍ଡା କାମ କରିବେ । କିନ୍ତୁ ଦୈବ ଭାବୁଥିଲା, ସେ କୋଟି ଜନତାର ମା ବାପ—ରୁଷିଆର ସଭାପତି । ମନ୍ଦିରରେ ରହି ପୁରାଣପଣ୍ଡା କାମ ଶିଖୁଥିଲାବେଳେ ସେ ଝଞ୍ଜ ଦଣ୍ଡ ପାଇଲେ । ବଡ଼ଟି ହେଉଛୁ

କାର୍ଲମାର୍କସଙ୍କର 'କାପିଟାଲ' । 'ଗୀତା, ଭାଗବତ,ବାଇବେଲ ଯୁଗ ଯୁଗ ଧରି ଯାହା କରିପାରେ ନାହିଁ, ଖଣ୍ଡିଏ ବହି 'କାପିଟାଲ' ତାହାକୁ ବେଶି କରିପାରିଛି । ରୁଷିଆର ଜାର୍ ବଂଶର ଅନ୍ୟାୟ ଅତ୍ୟାଚାର ଧୋଇଦେଇ ପୃଥିବୀରେ ସମାଜବାଦ ପ୍ରତିଷ୍ଠା କରି ଦେଲେ । ବହି ପଢ଼ି ପୁରାଣପଣ୍ଡା ଷ୍ଟାଲିନ୍‌ଙ୍କ ଆଖିରୁ ନିଆଁ ଝୁଲ ଖସିପଡ଼ିଲା । ସେ ହେଲେ ବିପ୍ଳବୀ । ରୁଷିଆ ପ୍ରଜାଙ୍କର ଲୁଣ କିଣିବା ପାଇଁ ବି ସମ୍ବଳ ନ ଥିଲା । ସେମାନଙ୍କୁ ରୁଟି ମାଖନ ଖୁଆଇବା ପାଇଁ ଓ ଦୁଧମହୁରେ ଦେଶ ଭରିଦେବା ପାଇଁ ଷ୍ଟାଲିନ୍ ହେଲେ ବିପ୍ଳବୀ ।

ଯେଉଁଠି କଥା କହିଲେ ଜିଭ କଟି ଯାଉଥିଲା, ସେଠି ବିପ୍ଳବୀ ମାନେ କଣ ଜାଣନ୍ତି ତ, ପାଣି ଭିତରେ ରହି କୁମ୍ଭୀର ସାଙ୍ଗେ ଲଢ଼େଇ କରିବା, ଫୁଲକଅଁଳ ଦେହକୁ ଶରଶଯ୍ୟାରେ ଶୁଆଇ-ଦେଇ ସାଧନା କରିବା କିମ୍ବା ଯମ ହାତରୁ ମଲା ପୁଅକୁ ଝିଙ୍କି ଆଣିବା । ଷ୍ଟାଲିନଙ୍କ ପକ୍ଷରେ ଏସବୁ ସମ୍ଭବ ହେଲା; କିନ୍ତୁ କି ନିର୍ଯ୍ୟାତନା, କି ନିଷ୍ପେଷଣ, କି ଶୋଷଣ ଅସିଧାରରେ ପଥ ଚାଲିବା !

ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ପଚାଶ ବର୍ଷକାଳ ତାଙ୍କୁ ଅଣନିଃଶ୍ୱାସୀ ହୋଇ କାମ କରିବାକୁ ପଡ଼ିଥିଲା । ସନ୍ଧାନୀ ଶିକାରୀର ଶର ଆଗରେ ମୃଗ ପରି ଏଣେତେଣେ ଦୌଡ଼ି ପଡ଼ି ମରିବାକୁ ସେ ବରଂ ପସନ୍ଦ କରିଥିଲେ; କିନ୍ତୁ ରୁଷିଆକୁ ମୁକ୍ତ ନ ଦେଇ ମରିବାପାଇଁ ସେ ପସନ୍ଦ କରି ନ ଥିଲେ । ଶତ୍ରୁ ହାତରୁ ରକ୍ଷାପାଇବା ପାଇଁ ରାତିକେ ଗୋଟିଏ ଜାଗାରେ ଶୋଉଥିଲେ । ଆଜି ଯଦି ଏଠି, କାଲି ସେ ସେଠି, ତଥାପି ଧରାପଡ଼ି ଆଠବର୍ଷ ଜେଲ ଖଟିଥିଲେ ।

ବାହାରେ ରହୁବାବେଳେ ଲୁଚିକରି ରହୁଥିଲେ, ଲୁଚିକରି ବକ୍ତୃତା ଦେଉଥିଲେ, ଖବରକାଗଜ ଚଳାଉଥିଲେ । ଆମ କମ୍ୟୁନିଷ୍ଟ ଭାଇମାନଙ୍କର ବର୍ତ୍ତମାନ କଷ୍ଟ ଓ କାର୍ଯ୍ୟକଳାପ ଯଦି ଜାଣିଥିବେ, ତାର ଶହେଗୁଣ କଷ୍ଟ କଳ୍ପନା କରନ୍ତୁ ତେବେ ଯାଇ ଷ୍ଟାଲିନ୍ କଷ୍ଟ ବା ସାଧନା ବୁଝିପାରିବେ । ଆଜି କମ୍ୟୁନିଷ୍ଟମାନେ ଧରା ପଡ଼ିଲେ ମାମୁଲି ଜେଲ୍; ମାତ୍ର ସେତେବେଳେ ଧରାପଡ଼ିଥିଲେ ହାଡ଼ ମାଂସ ଠା ଠା ହୋଇ ପେଟ୍ରୋଲରେ ଭଜା ହୋଇଥାନ୍ତା । ୧୯୦୫ ବିପ୍ଲବ ପରେ ନିଜର ମୁଣ୍ଡ ରକ୍ଷା କରିବା ପାଇଁ ଅନ୍ୟାନ୍ୟ ନେତା ଲେନିନ ଓ ଟ୍ରଟସ୍କି ପ୍ରଭୃତି ସ୍ୱିଜରଲାଣ୍ଡରେ ଲୁଚି ରହିଲେ; ମାତ୍ର ଷ୍ଟାଲିନ୍ ଠିକ୍ କଲେ, ପାଣି ଭିତରେ ରହି କୁମ୍ଭୀର ସାଙ୍ଗେ ଲଢ଼ିବେ ମରିବେ, ତ ରୁଷିଆ ମାଟିରେ ମରିବେ । ସ୍ୱିଜରଲାଣ୍ଡରୁ ଲେନିନ୍ ସିଗାରେଟ ଖୋଳରେ ବିପ୍ଳବୀ ବାର୍ତ୍ତାମାନ ପଠାଉଥିଲେ । ରୁଷିଆରେ ରହି ଷ୍ଟାଲିନ୍ ତାକୁ ପ୍ରଚାର କରୁଥିଲେ । ନିଆଁ ସାଙ୍ଗେ ଖେଳ ଖେଳୁଥିଲେ ।

ଷ୍ଟାଲିନ୍‌ଙ୍କୁ ଛଅଥର ସାଇବେରିଆରେ ନିର୍ବାସିତ କରାଯାଇଥିଲା । ପାଞ୍ଚଥର ସେ ଖସି ପଳାଇ ଆସି ନିଜ ବିପ୍ଳବ କାମ ଚଳାଇଥିଲେ । ଛ ଥରକୁ ପୋଲିସମାନେ ଠିକ୍ କଲେ ତାଙ୍କୁ ଏଥର ଏମିତି ଜାଗାକୁ ନେବାକୁ ହେବ ଯେମିତି ରୁକୁଣା ରଥ ଅଣଲେଉଟା ହେବ—ରୁଷିଆ ମାଟିରେ ପାଦ ପଡ଼ିବ ନାହିଁ କିମ୍ବା ରୁଷିଆ କଥା କାନରେ ବାଜିବ ନାହିଁ । ଉତ୍ତରମେରୁଠାରୁ ମୋଟେ ଅଠର ମାଇଲ ସାଇବେରିଆର ଗୋଟିଏ ନିର୍ଜନ ସ୍ଥାନରେ ଗୋଟିଏ କୁଡ଼ିଆରେ ତାଙ୍କୁ ଦୁଇଜଣ ପୋଲିସ ପହରାରେ ରଖାହେଲା । ସେଠି ତ ଘରୁ ବାହାରିଲେ ଶୀତରେ

ମରିବା କଥା । ସେଠି ପୁଣି ଜନ୍ତୁ ଖାଇବାକୁ ମିଳେ ନାହିଁ । କଥା ଅଛି ଯେ, ସେ ଅଞ୍ଚଳରେ ଗୁରପୋକକୁ ବି ଲୋକେ ମାଂସ ବୋଲି କହନ୍ତି । କିନ୍ତୁ ଷ୍ଟାଲିନ୍ ଏଥିରେ ହତାଶ ହେବା ଲୋକ ନୁହନ୍ତି । ଯାହା କହନ୍ତୁ ଦୁଃଖରେ ଯାହାର ଜୀବନ ଗଢ଼ା ହୋଇଛି, ତାର ଆଉ କେଉଁଥିରେ ବା ଡର ? ଏହି ଦୁର୍ଦ୍ଦିନରେ ତାଙ୍କର ଦୃଢ଼ବିଶ୍ୱାସ ଥିଲା ହେଲେ ନା ହେଲେ ପୁଣି ରୁଷିଆକୁ ଫେରିବେ । ତାଙ୍କର ସ୍ୱପ୍ନ ସଫଳ ହେଲା, ସେ ଫେରିଲେ । ୧୯୧୭ ବିପ୍ଳବ ଫଳରେ ସେ ମୁକ୍ତ ପାଇଁ ପୁଣି ରୁଷିଆକୁ ଚାଲି ଆସିଲେ । ୧୯୨୦ ମସିହାରେ ସେ ରୁଷିଆର ସଭାପତି ହେଲେ । ସେ ଦିନର ଜୀତଦାସ ପୁଅ ଆଜ କୋଟି ଜୀତଦାସଙ୍କ ମୁକ୍ତିଦାତା-କୋଟି କଙ୍କାଳର ତ୍ରାଣଦାତା । ତାଙ୍କ ସମ୍ପର୍କରେ କବିଙ୍କ କଥାକୁ ଓଲଟାଇ କୁହାଯାଇ ପାରେ— କାଲି ଯେ ଫକୀର ଆଜ ରାଜେନ୍ଦ୍ର ଆସନେ ।

ଦୁନିଆଁରେ ଏତେ ନେତା ଅଛନ୍ତି; ମାତ୍ର ଷ୍ଟାଲିନ୍‌ଙ୍କ ପାଇଁ ଏତେ ଭକ୍ତି କାହିଁକି ? ପ୍ରଧାନ କାରଣ ହେଉଛି, ରୁଷିଆର ଏକଛତ୍ର ମାଲିକ ହେବା ପରେ ମଧ୍ୟ ରାଜସମ୍ଭୋଗ ସେ ଗୋଡ଼ରେ ଆଡ଼େଇ ଦେଇଥିଲେ । ରହୁଥିଲେ ଏକ ଦୁଇବଖୁରିଆ ଘରେ । ଶହ ଶହ ଅଫିସର ଯେଉଁ ରେସ୍ତୋରାରେ ଖାଉଥିଲେ ସେ ମଧ୍ୟ ସେହି ଖାଦ୍ୟ ଖାଉଥିଲେ । ତାଙ୍କୁ ଚିହ୍ନା ପଡୁ ନ ଥିଲେ ସରକାରୀ ଖାନସମା, ମାତ୍ର ଜଣେ ସାଧାରଣ ସୈନିକ ।

ଅପରିଚିତ ଲୋକଙ୍କ ସାଙ୍ଗେ ସାକ୍ଷାତ କରିବା ପାଇଁ ତାଙ୍କୁ ଭାରି ଝାଉଁଆ ଲାଗେ । ସେଥିପାଇଁ ପରରାଷ୍ଟ୍ର ଦୂତମାନେ ରୁଷିଆରେ ବର୍ଷ ବର୍ଷ ରହି ମଧ୍ୟ ଷ୍ଟାଲିନ୍‌ଙ୍କ ଦର୍ଶନ ପାଆନ୍ତି ନାହିଁ । ପୋଷାକ ପତ୍ରରେ ତାଙ୍କର ଭାରି ସଉକ । ଆମେରିକାର ଓ୍ୱିଣ୍ଡେଲ

ଓ୍ୱାଲ୍‌କ ତାଙ୍କୁ ଘୃଣାପାଞ୍ଚଥର ଦେଖା କଲେ; ମାତ୍ର କେବେହେଲେ ସେ ତାଙ୍କୁ ଏକା ପୋଷାକରେ ଦେଖିନାହାନ୍ତି ।

ଷ୍ଟାଲିନ୍ ଦୁଇଥର ବିବାହ କରିଥିଲେ । ପ୍ରଥମ ଥର କାଥରିନ୍‌ ବୋଲି ଗୋଟିଏ ଅଳ୍ପବୟସୀ ଯୁବତୀଙ୍କୁ ବିଭା ହୋଇଥିଲେ । ସେ ସ୍ତ୍ରୀଙ୍କର ଗୋଟିଏ ମାତ୍ର ପୁଅ ହୋଇଥିଲା । ପ୍ରତିଦିନ ଯେ ପୋଲିସ ବନ୍ଧୁକ ଆଗରେ ଆହତ ମୃଗପରି ଦୌଡ଼ୁଥିଲା । ପ୍ରଣୟ ସୋହାଗ ପାଇଁ ସେ ଦାରୁଣ ଜୀବନରେ ସ୍ଥାନ ବା ଥିଲା କେଉଁଠି ? ତଥାପି ଦଇବ ସହିଲା ନାହିଁ, ସେହି ହତଭାଗିନୀ ସ୍ତ୍ରୀ ରାଜଯକ୍ଷ୍ମାରେ ମରିଗଲେ । ତାପରେ ଅନେକ ଦିନପରେ ଊନଶ-ବର୍ଷ ବୟସରେ ରସିକ ଷ୍ଟାଲିନ୍‌ ଏକ କନ୍ୟା ଗର୍ଯ୍ୟାର ହାତ ଧଇଲେ । ଷ୍ଟାଲିନ୍‌ଙ୍କୁ ଊନଶବେଳେ ସ୍ତ୍ରୀଙ୍କ ବୟସ ମାତ୍ର ସତର । ସେ ମଧ୍ୟ ବାରବର୍ଷ ପରେ ରକ୍ତ ବିପାକ୍ତ ହୋଇଯିବାରୁ ମରିଗଲେ । ସେ ଛାଡ଼ି ଯାଇଛନ୍ତି ଗୋଟିଏ ପୁଅ ଓ ଝିଅ । ସେ ଦୁହେଁ ସୈନ୍ୟବିଭାଗରେ କାମ କରନ୍ତି ।

ଷ୍ଟାଲିନ୍‌ ଭଯୁଙ୍କର ଆଶାବାଦୀ । ତାଙ୍କୁ ଯଦି କେହି କେହି ପ୍ରଶଂସା କରି କହନ୍ତି—ପୃଥିବୀରେ ଆପଣ ଅସମ୍ଭବ ସମ୍ଭବ କରି-ଛନ୍ତି, ସେ ଉତ୍ତର ଦିଅନ୍ତି—ଆମେ ଯାହା କରିବୁ ବୋଲି ଭାବିଛୁ ତା ତୁଳନାରେ ଯାହା କରିଛୁ ତା କିଛି ନୁହେଁ । ମୃତ୍ୟୁ ଆସିଯାଏ— ଦୁନିଆରେ ପୁଣି ଏହାଠୁ ଅଧିକ କଣ କରିବାର ଅଛି ?

ଷ୍ଟାଲିନ୍‌ଙ୍କ ପ୍ରତି ଆମର କୃତଜ୍ଞ ହେବାର କଥା; କାରଣ ସେ ଋଷିଆକୁ ରକ୍ଷା କରିବାକୁ ଯାଇ ଆପଣଙ୍କୁ, ମୋତେ, ସମସ୍ତଙ୍କୁ ବଞ୍ଚାଇ ନାହାନ୍ତି କି ଷ୍ଟାଲିନ୍‌ଙ୍କ ଲାଲସେନା ଯଦି ହିଟ୍‌ଲରକୁ ହଟାଇ ନ ଥାନ୍ତେ, ତେବେ ଆପଣ ନା ଆମେ······

---

# ଆମେରିକାର ସଭାପତି ଆଇଜେନ୍ ହ୍ୱୋର୍

ଆଜ ଆମେରିକାର ପ୍ରେସିଡେଣ୍ଟ ଆଇଜେନ୍ ହୋର୍‌ଙ୍କୁ ନ ଚିହ୍ନେ କିଏ ? ଚର୍ଚ୍ଚିଲ ହାତ ଟେକନ୍ତି, ନେହେରୁ ସମ୍ମାନ କରନ୍ତି, ଷ୍ଟାଲିନ୍ ସମ୍ଭ୍ରମ କରନ୍ତି ପରେ ପୃଥିବୀ ସମସ୍ୟା ସମାଧାନ କରିବା ପାଇଁ ତାଙ୍କୁ ଚିଠି ଲେଖନ୍ତି । ବିରାଟ ବ୍ୟକ୍ତି ସେ । ସେ ଆମେରିକାର ପ୍ରେସିଡେଣ୍ଟ ପ୍ରାସାଦ ହ୍ୱାଇଟ୍ ହାଉସରେ ରହନ୍ତି । ଯେଉଁଠି ରହୁଥିଲେ ଆବ୍ରାହମ୍ ଲିଙ୍କନ୍, ଯେଉଁଠି ବି ରହୁଥିଲେ ରୁଜ୍‌ଭେଲ୍ଟ, ଟ୍ରୁମାନ । ପୃଥିବୀର ଭାଗ୍ୟ-ମୀମାଂସା ପାଇଁ କୋଟି ଜନତା ସେହି କୋଠାକୁ ଅନାଇ ରହିଥାନ୍ତି ।

କିନ୍ତୁ ଏଇ ଆଇଜେନ୍ ହୋର୍‌ଙ୍କ ଅତୀତ କଥା ଶୁଣିଲେ ମଣିଷ ଆଶ୍ଚର୍ଯ୍ୟ ହୁଏ । ଏଇ ମାଟିର ମଣିଷ, ଏମିତି ଉଠିଲେ କେମିତି ? ହ୍ୱାଇଟ୍ ହାଉସକୁ ଆବ୍ରାହମ୍ ଆସିଥିଲେ କାଠ କୁଡ଼ିଆରୁ, କିନ୍ତୁ ଆଇଜେନ ଆସିଥିଲେ ପଦ୍ମ କ୍ଷେତରୁ । ଗାଈ ଆଉ ପିଲା ସେ, ଗାଈ ଜଗୁଥିଲେ । ଶୀତଦିନେ ବରଫରେ ପାଦହାତ ତାଙ୍କର ଫେଡ଼ାର ହୋଇଯାଏ । କିନ୍ତୁ ଭୋରଟାରୁ ଉଠି ସେ ଅଣ୍ଟା ଅଣ୍ଟା ଚୁଲ୍ଲୀ ଲଗାନ୍ତି, ଚା' ବସାନ୍ତି—ବାପ, ମା, ଭାଇ ଉଠିଲେ ଖାଇବେ । ସେମାନେ ଛ' ଭାଇ, ଗୋଟିଏ ବୋଲି ଭଉଣୀ ନାହିଁ । ସେଥିପାଇଁ ଅନେକ ସମୟରେ ସେ ରୋଷାଇଘରେ ମା'ଙ୍କୁ ସାହାଯ୍ୟ କରନ୍ତି । ଗତ ଯୁଦ୍ଧରେ ପୃଥିବୀ ଜୟ କରି ସେ ଯେମିତି ଗୌରବ ଅନୁଭବ କରନ୍ତି, ତାଙ୍କୁ ଭଲ ଆଳୁଚୋପ ରାନ୍ଧି ଆସେ ବୋଲି ସେମିତି ଗର୍ବ କରନ୍ତି । ରଣକ୍ଷେତ୍ରରେ ଶତ ସୈନ୍ୟଙ୍କୁ

ଯେମିତ ଚତୁରଅଛନ୍ତି, ଏବେ ଦେଖାଉଛନ୍ତି ସେମିତ ଶ୍ରୀମତୀ ଆଇଜେନ୍‌ଙ୍କୁ ହାୱାର କରିଦେଇ ନିଜେ ଦେଖାଇ ଦେଉଅଛନ୍ତି । ଦୁନିଆରେ ଏମିତ ସୌଭାଗ୍ୟବତୀ ନାରୀ କେତେ ଜଣ ଅଛନ୍ତି ? ସେଥିପାଇଁ ବୋଧହୁଏ ଶ୍ରୀମତୀ ଆଇଜେନ୍ ହୋୱାର୍ କହନ୍ତି ଯେ, ଆଇକଙ୍କ ହାତ ଧରିଥିବାକୁ ମେ ସ୍ୱପ୍ନରେ ଅଛନ୍ତି । ଆଇଜେନ-ହୋୱାର୍‌ଙ୍କ ଡାକ ନାଁ ଆଇକ୍ ।

ହାଇସ୍କୁଲରେ ପାଠ ପଢ଼ିଲାବେଳେ ସେ ସେମିତ କିଛି ବିଚକ୍ଷଣ ନ ଥିଲେ । ସେ ବହୁତ ଇତିହାସ ବହି ପଢ଼ୁଥିଲେ, ବିଶେଷତଃ ମିଲିଟାରୀ ଇତିହାସ । ଲୋକେ ଭାବୁଥିବେ, ସେ ହୁଏତ ୟେଲ୍ ବିଶ୍ୱବିଦ୍ୟାଳୟର ( ୟେଲ୍ ଆମେରିକାର ଦ୍ୱିତୀୟ ବୃହତ୍ ବିଶ୍ୱବିଦ୍ୟାଳୟ, ପ୍ରଥମ ହାର୍ଭାର୍ଡ଼ ) ଇତିହାସ ଅଧ୍ୟାପକ ହେବେ । କିନ୍ତୁ କିଏ ଜାଣିଥିଲା ସେ ଏମିତ ଇତିହାସ ତିଆରି କରିବେ, ଯାହା ୟେଲ୍ ବିଶ୍ୱବିଦ୍ୟାଳୟରେ ପଢ଼ା ହେବ । ତାଙ୍କ ସାଥୀମାନେ ତାଙ୍କୁ 'ଆଇକ୍' ବୋଲି ଡାକନ୍ତି; କିନ୍ତୁ ତାଙ୍କ ମା ସେ ନାଁ ଶୁଣିଲେ ଚିଡ଼ନ୍ତି । ତାଙ୍କର ପୂରା ନାଁ ହେଉଛି ଡ୍ୱାଇଟ୍ ଡେଭିଡ୍ ଆଇଜେନ୍ ହୋୱାର୍ ।

ପିଲାବେଳେ ସେ ବାସନ ମାଜୁଥିଲେ, ଗାଈ ଜଗୁଥିଲେ; କିନ୍ତୁ ୱେଷ୍ଟ୍‌ପଏଣ୍ଟ ମିଲିଟାରୀ କଲେଜରୁ ପାସ୍ କଲା ପରେ ନିଜ ଶକ୍ତିରେ ସେ ଉଠିଗଲେ । ବୋଧହୁଏ ପୃଥିବୀ ଇତିହାସରେ ସେ ଉତ୍ତମ ଶକ୍ତିଶାଳୀ ସେନାପତି । ଗତ ଯୁଦ୍ଧରେ ତାଙ୍କରି ହାତ ମୁଠାରେ କେତେ ଶକ୍ତି ଥିଲା; ଭାବିଲେ ଆଖି ବୁଜି ହୋଇଯାଏ ।

ଏହି ପୃଥିବୀରେ ବିଶ୍ୱର କୌଣସି ସେନାପତି ଏପର୍ଯ୍ୟନ୍ତ ଜନ୍ମ ହୋଇ ନାହିଁ, ଯେ ତାଙ୍କଠୁ ଅଧିକ ଶକ୍ତିର ମାଲିକ ହୋଇଛନ୍ତି । ଆଲେକ-ଜାଣ୍ଡାର, ସିଜାର, ନେପୋଲିଅନ ପ୍ରଭୃତି ସେନାନାୟକମାନଙ୍କର ସମସ୍ତ ସୈନ୍ୟ ମିଶାଇଲେ ଯେତିକ ହେବେ, ତାଙ୍କର ପଦାତିକ ସୈନ୍ୟ ଥିଲେ ସେତିକ । ଡ୍ରେକ୍ ନେଲସନ, ହାକିନ୍ସ୍ ସମସ୍ତଙ୍କର ମିଶାଇ ଯେତିକ ନୌସେନା ଥିଲେ, ଆଇଜେନ ହୋୱାରଙ୍କର ତାଠୁ ବେଶୀ ଥିଲେ । ସ୍ୱପ୍ନରେ ଜଣେ ଯେତିକ କଳ୍ପନା କରି ନଥିବ ତାଠୁ ବେଶୀ ଥିଲେ ଉଡ଼ାଜାହାଜବାହିନୀ । ପାଶ୍ଚାତ୍ୟ ଜଗତର ଜଳ-ସ୍ଥଳ-ଆକାଶ ସମସ୍ତଙ୍କର ଏକଛତ୍ରାଧିପତି ମାତ୍ର ଜଣେ ଲୋକ । ସେ କେବଳ କହିପାରିଥାନ୍ତେ "ଦେଖାଇ ଦେବ ଯାହା ଚଉଦପୁର-......"। ସତରେ ଭାବ ହୁଏ ନା, କଂସାସୁର ଗଉଡ଼ପିଲ୍ଲ ପୁଣି......

ଗତ ମହାଯୁଦ୍ଧରେ ସେ ସମଗ୍ର ମିଳିତ ପାଶ୍ଚାତ୍ୟ ବାହିନୀର ସର୍ବୋଚ୍ଚ ସେନାପତି ହୋଇଥିଲେ । ଅବଶ୍ୟ କେହି ଦୟା କରି ତାଙ୍କୁ ସେ ଆସନରେ ବସାଇ ନ ଥିଲେ । ସେହି ପଦ ପାଇଁ ଯେତେ-ବେଳେ ଲୋକ ଦରକାର ହେଲା, ଆଖି ବୁଜି ସମସ୍ତେ ଠିକ୍ କଲେ ଏପରି ଯୋଗ୍ୟ ଲୋକ ଆଇଜେନ ହୋର୍ ଚର୍ଚ୍ଚିଲ, ରୁଜ୍‌ଭେଲ୍ଟଙ୍କ କଥା ଛାଡ଼ନ୍ତୁ, ଷ୍ଟାଲିନ୍ ବି ତାଙ୍କୁ ପସନ୍ଦ କଲେ । ଆଇଜେନ୍ ହୋର୍ଙ୍କ ସମ୍ପର୍କରେ ରୁଜ୍‌ଭେଲ୍ଟ ଷ୍ଟାଲିନ୍‌ଙ୍କ ପାଖକୁ ଯେଉଁ ଚିଠି ଲେଖିଥିଲେ ସେ ଚିଠି ଅନେକ ଦିନ ପର୍ଯ୍ୟନ୍ତ ଆଇଜେନଙ୍କ ଅଫିସ ଟେବୁଲ ଉପରେ ପଡ଼ିଥିଲା ।

ତାଙ୍କ ମିଲିଟାରି ଜୀବନରେ ଗୋଟିଏ ଅତି ସାଧାରଣ ନିୟମ ପାଳନ କରି ସେ ଏତେ ବଡ଼ ହୋଇଗଲେ । କଥାଟା ଅତି ସହଜ; କିନ୍ତୁ କରିବାକୁ ଗଲେ ଭାରି ଭଡ଼ । ମାନେ, ଯେଉଁ କାମ କରନା କାହିଁକି ଟିକିନିଖି ପରୀକ୍ଷା କରି କରିବ । ସେ ଯେଉଁ ନିର୍ଦ୍ଦେଶ ଦିଅନ୍ତି, ତାକୁ ଟିକିନିଖି କରି ପରୀକ୍ଷା କରି ଦେଖିନିଅନ୍ତି । କେବଳ ନୌବାହିନୀକୁ ସେ ଯେଉଁ ଯୋଜନା ଦେଇଥିଲେ, ତାହା ଲେଖିବା ପାଇଁ ଆଠ ଶହ ପୃଷ୍ଠା ଲାଗିଥିଲା ।

ୱେଷ୍ଟପଏଣ୍ଟ ମିଲିଟାରି ସ୍କୁଲରେ ଆଇଜେନ ହୋର୍‌ଙ୍କ ନା ତମ୍ବା ପଟାରେ ଲେଖା ହୋଇ ରହିଛି, କାରଣ ସେ ସବୁଠୁ ଭଲ ଫୁଟବଲ ଖେଳୁଥିଲେ । ସେ ସ୍କୁଲରେ ତାଙ୍କ ନା ଥିଲା କଂସାସ୍ ଷଣ୍ଡି ଆଭୂତ, କାରଣ ଷଣ୍ଡି ଆଭୂତ ଯେମିତି ଘରଦ୍ୱାର ଭାଙ୍ଗି ଟେକି ନେଇଯାଏ, ଆଇଜେନ୍ ସେମିତି ଖେଳିଲାବେଳେ ସମସ୍ତଙ୍କୁ ଉଡ଼ାଇ ନିଅନ୍ତି । ପରେ ତାଙ୍କ ଗୋଡ଼ ଭାଙ୍ଗିଯିବାରୁ ସେ ଫୁଟବଲ ଖେଳିଲେ ନାହିଁ । ନିଜେ ଗୋଡ଼ ଭାଙ୍ଗି ଯେମିତି ଖେଳରୁ ରହିତ ହେଲେ, ହିଟ୍‌ଲର ଦମ୍ଭ ଭାଙ୍ଗି ସେମିତି ଯୁଦ୍ଧ ଶେଷ କଲେ ।

ଆଇକ ଯେ ଏତେ ଚଞ୍ଚଳ ମିଲିଟାରି ସ୍ତରରେ ଉଠିପାରିଲେ ତାର କାରଣ ହେଉଛି ତାଙ୍କର ତୀକ୍ଷ୍ଣ ବୁଦ୍ଧି, ବକ୍ତୃତ୍ୱଶକ୍ତି, ତାଙ୍କ ଟ୍ରେନିଂ, ତାଙ୍କ ଚରିତ୍ର । ତାଙ୍କର ସବୁଠାରୁ ବଡ଼ ଗୁଣ ଅନ୍ୟକୁ ନେତୃତ୍ୱ ଦେବା । ଆମର ମନେ ହୁଏ, ନେତା ହେବା ସବୁଠୁ ସହଜ କାମ । ଖବର କାଗଜରେ ଯା ନାଁ ଯେତେ ଥର ଦେଖି

ବାହାରକୁ, ସେ ସେମାନଙ୍କ ବଡ଼ ନେତା; ମାତ୍ର ପ୍ରକୃତରେ
ନେତା ମାନେ ତା ନୁହେଁ । ଯେଉଁ ଲୋକ ଯେତେ ଲୋକଙ୍କୁ
ଆପଣାର କରିପାରିବ, ବାସ୍ତବରେ ଭଲ ବା ପୁରସ୍କାର, ଆଶା
ନ ରଖି ଯେ ବହୁ ଲୋକଙ୍କ ହାତରେ କାମ ହାସଲ କରି ପାରିବ
ସେହି ପ୍ରକୃତରେ ନେତା । ଆମ ଗାଁଗହଳରେ ପ୍ରକୃତରେ ଏହି
ପ୍ରକାର କେତେ ନେତା ଖଟି ଯାଉଛନ୍ତି, ଅଥଚ ସହରର ବଜାରରେ
ଯେ ଖବରକାଗଜରେ ନାଁ ଛପିଯାଉଛି, ସେ ନେତା ହୋଇଯାଉଛି;
ମାତ୍ର ଆଇକେନ୍ ହାୱାର୍ ଆମ ଗାଁଗହଳର ସେ ନେତାଙ୍କପରି ପ୍ରକୃତ
ନେତା । ତାଙ୍କୁ ସୈନ୍ୟମାନେ ଏମିତି ଭଲ ପାଉଥିଲେ ଯେ
ସମସ୍ତେ ପ୍ରିୟ "ସେନାପତି" ବୋଲି ଡାକୁଥିଲେ । ଲୋକର
ବ୍ୟକ୍ତିତ୍ୱ ବୋଲି ଯେଉଁ ଜିନିଷ, ତାହା ତାଙ୍କର ଖୁବ୍ ବେଶୀ ।
ତାଙ୍କ ମିଲଟାରୀ ଜୀବନ ଅତି ବିଚିତ୍ର । ସେ କୋଟି କୋଟି ଲୋକଙ୍କ
ନେତୃତ୍ୱ ନେଇଛନ୍ତି; ହଜାର ହଜାର ଜଳ, ସ୍ଥଳ, ଆକାଶବାହିନୀଙ୍କୁ
ନିର୍ଦ୍ଦେଶ ଦେଇଛନ୍ତି; ମାତ୍ର ମାକ୍‌ଆର୍ଥରଙ୍କ ପରି କେବେହେଲେ
ପାଞ୍ଚ ଜଣ ସୈନ୍ୟ ଦେଇ ସଭିଙ୍କୁ ସତ ଲଢ଼େଇ କରି ନାହାନ୍ତି ।
ହାତର ଜୋର ସେ ମୋଟେ ଦେଖାଇ ନାହାନ୍ତି; ମାତ୍ର ମଥାର
ଜୋର ସବୁଠୁ ବେଶି ଦେଖାଇଛନ୍ତି । ଯେଉଁଠି ଗୁଳି ବର୍ଷା
କରିବାକୁ ହୁଏ, ସେଠି ସେ ନ ଥାନ୍ତି । ମାତ୍ର କେଉଁଠି ଗୁଳିବର୍ଷା
କରିବାକୁ ହେବ, ସେହି କଥା ସେ ଜାଣନ୍ତି ଓ ସେନାପତିମାନଙ୍କୁ
ନିର୍ଦ୍ଦେଶ ଦେଇଥାନ୍ତି ।

ଏ ଯୁଗରେ ବହୁତ ବଡ଼ ବଡ଼ ଲୋକଙ୍କର ଜୀବନ କାହାଣୀ
ଆମେ ଜାଣିବାକୁ ପାଉ; ମାତ୍ର ଯେଉଁ ମିଲଟାରୀ ନେତାଙ୍କୁ

ଦେଖିଲେ ଡରିମାଡ଼େ, ସେମାନଙ୍କ କଥା ଆମମାନଙ୍କୁ କିଛି ଜଣା ନାହିଁ କହୁଥିଲେ ଚଳେ । ଯେଉଁ ମିଲିଟାରୀ ଲୋକେ ପ୍ରତି ମୁହୂର୍ତ୍ତରେ ମରିବାକୁ ଓ ମାରିବାକୁ ପ୍ରସ୍ତୁତ ସେମାନେ କଣ ଖାଆନ୍ତି, କେମିତି ରହନ୍ତି, ତାଙ୍କ ମନର ଗତିବିଧି କଣ, ଆମ ସାଧାରଣ ଲୋକଙ୍କ ପରି ତାଙ୍କ ମନରେ ଦୟା ଧର୍ମ ଥାଏ କି ନାହିଁ ଜାଣିବାକୁ ମନ ହୁଏ । ଆଇଜେନ ହୋୱାର୍‌ଙ୍କ କଥା ଶୁଣିବେ ! ଲୁଗାପଟା ଓ ପୋଷାକପତ୍ରରେ ଷ୍ଟାଲିନ୍‌ଙ୍କର ଭାରି ସଉକ, ମାତ୍ର ଆଇଜେନ ହୋୱାର୍‌ଙ୍କ ପୋଷାକ ପ୍ରତି ସଉକ ମୋଟେ ନ ଥିଲା । ସେ କେବେହେଲେ ମିଲିଟାରୀ ରିବନ୍ ଲମ୍ବା ମେଡ଼ଲ ମାରି ବାହାରିବାକୁ ପସନ୍ଦ କରନ୍ତି ନାହିଁ । ସତରେ ଯାହାର ଧନ ଥାଏ, ତାର ମନ ନ ଥାଏ ।

ଏତେ ବଡ଼ ମିଲିଟାରୀ ସେନାପତି, ଜାତିରେ ଧାଡ଼େବ, ଅଥଚ ସେ କେବେ ମଦ ପିଅନ୍ତି ନାହିଁ । ସେ କହନ୍ତି, ଯେଉଁ ଲୋକକୁ ବହୁତ କଥା ଗୋପନ ରଖିବାକୁ ପଡ଼େ, ସେ ମଦ ପିଇଲେ ନିଜ ଜିଭକୁ ଠିକ୍ ରଖି ପାରେନା । ନଶା ଓ ପଶା ଦୁଇ ଶବ୍ଦ ଭିତରୁ ତାଙ୍କର ପିନା ନଶା ନ ଥିଲା; କିନ୍ତୁ ପଶା ଟା ଥିଲା, ଅର୍ଥାତ୍ ସେ ଭାରି 'ବ୍ରିଜ୍' ଖେଳନ୍ତି ।

ଏସ କହୁତ ଘଡ଼ନ୍ତି । ଗ୍ରନ୍ଥରେ ଗଦାଏ ଲେଖାଏଁ ଦନ୍ତି ଆଗି ମହାନଙ୍କୁ ଶେଷ କରି ଦେଉଥାନ୍ତି । କିନ୍ତୁ ଆଇଜେନ ହୋୱାର୍ ଯେତେବେଳେ ପାଶ୍ଚାତ୍ୟ ବାହିନୀର ସର୍ବୋଚ୍ଚ ସେନାପତି ହେବା ପାଇଁ ଆମେରିକାରୁ ଉଡ଼ିଆସିଲେ, ସେ ଯାଙ୍କରେ କି କହୁ

ଆଣିଥିଲେ ଜାଣନ୍ତୁ ? ଖଣ୍ଡିଏ ମାତ୍ର ବହି ଆଣିଥିଲେ 'ବାଇବେଲ୍'
—ଖ୍ରୀଷ୍ଟଧର୍ମର ଗୀତା···ଧର୍ମ ନ ଥାଇ ଧର୍ମୀ ରହୁଛି କେଉଁଠି ?

ସାନ ପିଲମାନେ ମିଲଟାରୀ ପୋଷାକ ପିନ୍ଧି ମାର୍ଚ୍ଚିଂ କରି ରାସ୍ତାରେ ଗଲାବେଳେ ଆଇଜେନ ହ୍ୱୋର୍ଙ୍କ ମା ଗୌରବରେ କହନ୍ତି, ମୋର ବି ଗୋଟିଏ ପୁଅ ମିଲଟାରୀରେ ଯାଇଛି । କେଡ଼େ ସାନ ପୁଅଟିଏ ସତେ ।

# ବିଜ୍ଞାନର ରାଜରାଣୀ ମାଡ଼ାମ୍ କ୍ୟୁରୀ

କୁସୁମ କଅଁଳ ନାରୀ ଦେହରେ ଆଘାତ ଲାଗିଲେ ସେ ଲଇଁ ନ ପଡ଼ି କେମିତି ଲୁହା ପାଲଟି ଯାଏ, ତା ଅନ୍ତତଃ ଜଣକ ଜୀବନରେ ଘଟିଛି । ନାନା କଷ୍ଟ, ନାନା ଅପମାନ ସତ୍ତ୍ୱେ ଗବେଷଣାରୁ ପଛାଗି ସାଧନା ସମୃଦ୍ଧ ହୋଇଛନ୍ତି । ଗବେଷଣା-ସାଧନା ପ୍ରଣୟ ପାଇଁ । ମାତ୍ର କ୍ୟୁରୀ ସାଧନା ସାରା ସଂସାର ପାଇଁ । କ୍ୟାନ୍‌ସାର ରୋଗ ନା ଶୁଣିଛନ୍ତି ? ତାକୁ ଓଡ଼ିଆରେ କହନ୍ତି କର୍କଟ ରୋଗ । ଏହି ରୋଗରେ ଦୁନିଆରେ ମହା ମହା ଲୋକ ନିଃସହାୟ ହୋଇ ମରିଛନ୍ତି । ନେପୋଲିୟନ୍ ସଂସାର ଜୟ କରିଛନ୍ତି; କିନ୍ତୁ କ୍ୟାନସାର ଜୟ କରି ନାହାନ୍ତି । ଏହି ମହା ବ୍ୟାଧିର ନିଦାନ ଖୋଜି ବାହାର କରିଛନ୍ତି ଜଣେ ନାରୀ, ତାଙ୍କରି ନାଁ ହେଉଛି ମାଡ଼ାମ୍ କ୍ୟୁରୀ । ମା' ନ ହେଲେ ଦୁନିଆର ସାହା ହୁଅନ୍ତା କିଏ ?

ଇତିହାସ ପ୍ରସିଦ୍ଧ ପୋଲାଣ୍ଡରେ ତାଙ୍କ ଘର । ଭାରି ଗରିବ ସେ । ଜୀବନରେ ଖାଇବାକୁ ନ ପାଇ ଅନେକ ଥର ତାଙ୍କ ମୁଣ୍ଡ ଟେକି ନେଇଛି, ସେ ଭୂଇଁରେ ଖସି ପଡ଼ିଛନ୍ତି, ଦେହଟା ଖସିପଡ଼ିଛି ସତ; କିନ୍ତୁ ମନଟା କେବେ ପଡ଼ିନାହିଁ । ସେଥିପାଇଁ ଦରିଦ୍ରମାଡ଼ାମ୍-କ୍ୟୁରୀ ପୁଣି ମହା ଧନରେ ଧନୀ ହୋଇଛନ୍ତି । ସଭ୍ୟ ସମାଜର ସମ୍ମାନ-ମୁକୁଟ ଦୁଇଥର ତାଙ୍କ ମଥାରେ ଥୁଆ ହୋଇଛି । ଏ ସାରା ଦୁନିଆରେ ସେ ଏକମାତ୍ର ନାରୀ, ଯେ ଦୁଇଥର ନୋବେଲ ପୁରସ୍କାର ପାଇଛନ୍ତି—୧୯୦୩ରେ ଥରେ ପଦାର୍ଥ ବିଜ୍ଞାନ ପାଇଁ ଓ ୧୯୧୧ରେ ଥରେ ରସାୟନ ବିଜ୍ଞାନ ପାଇଁ ।

ପ୍ୟାରିସ ସହରରେ ପାଠ ପଢ଼ି ସେମାନେ ଶୁଣିଲେ ଛୁଟି ତଥା ଅର୍ଥ୍ୟ ସମ୍ଭୋଗ ଯାହା କପାଳରେ ଜୁଟି ନାହିଁ, ପଚିଶ ବର୍ଷ ଘରେ ହଜାର ଲକ୍ଷ ଟଙ୍କା ଖର୍ଚ୍ଚ କରି ସେମାନେ ତାଙ୍କର ଚଳ ଚିତ୍ରମାନେ ଦେଖାଉଛନ୍ତି । ମାଟିର ମାଡ଼ାମ୍ ମାଣିକ୍ୟ ସ୍ତୂପମାନେ ସଜ୍ଜିତ ହୋଇଛନ୍ତି । ମାଡ଼ାମ୍ କ୍ୟୁରୀ ଜୀବନରେ ଥରେ ମାତ୍ର ଅପମାନ ପାଇ ପରେ କିପରି ବହୁ ସମ୍ମାନର ପାତ୍ରୀ ହୋଇଥାନ୍ତି ଛନ୍ତି, ସେ ଗଳ୍ପ ଆମର ଜାଣିବାର କଥା ।

କ୍ୟୁରୀଙ୍କୁ ଯେତେବେଳେ ଊନେଇଶ ବର୍ଷ, ସେତେବେଳେ ସେ ପୋଲାଣ୍ଡରେ ଜଣେ ଧନୀ ଲୋକଙ୍କ ଘରେ କାମ କରୁଥିଲେ । ସେହି ଧନୀ ଲୋକର ଗୋଟିଏ ଦଶ ବର୍ଷର ଝିଅର ଲାଳନପାଳନ ଓ ପାଠପଢ଼ା ଇତ୍ୟାଦି ସବୁ କଥା ସେ ବୁଝୁଥିଲେ । ସେହି ଝିଅର ବଡ଼ଭାଇ ବିଦେଶରେ ପାଠ ପଢ଼ୁଥିଲେ । ବଡ଼ଦିନ ଛୁଟିରେ ସେ ଘରକୁ ଫେରିଲେ — କ୍ୟୁରୀଙ୍କ ସଙ୍ଗେ ଦେଖା ହେଲା । କ୍ୟୁରୀ ସୁନ୍ଦରୀ । ଉଚ୍ଛୁଳା ଯୌବନର ଆଷାଢ଼ ସ୍ରୋତ ପ୍ରବାହମାନ, ଚଞ୍ଚଳ । ନବଲାବଣ୍ୟମୟ କ୍ୟୁରୀ ପୁଣି ନଜରେ ପଡ଼ । ଧନୀପୁତ୍ରଙ୍କ ଆଖି ଝଲସିଲା । ଯୌବନର ଆହ୍ୱାନରେ ଅନେକ ବାର ଦୁହେଁ ନାଚିଲେ । ପରସ୍ପରକୁ ଭଲ ପାଇବା ସ୍ୱାଭାବିକ କଥା । ପୁଅ ଯେତେବେଳେ କ୍ୟୁରୀଙ୍କ ସଙ୍ଗେ ବିବାହ ପ୍ରସ୍ତାବ ଆଣିଲେ, ମା' ତାଙ୍କର ମୂର୍ଚ୍ଛା ଗଲେ; କିନ୍ତୁ ବାପା, ପୁରୁଷ କି ନା; ପୌରୁଷ ଦେଖାଇ ଗର୍ଜି ଉଠିଲେ, ଟଙ୍କା ଭୁଲା ଚାକିରିଆ ଗାଉଁଲୋକ, ମୋ ପୁଅ ପାଇଁ ମାଡ଼ାମ୍ କ୍ୟୁରୀ ? ତାଙ୍କର ଏମ୍ ଆସ୍ପର୍ଦ୍ଧା ନୁହେଁ ତ !

ମାଡ଼ାମ୍ଙ୍କ ମୁହଁରେ ଟିକି ଲୁହଟିଏ, ଅନ୍ତରରେ ଦାରୁଣ ଆଘାତ । ପଥରେ ସିନା କଣ୍ଟା ଫୁଟିବ ନାହିଁ ପଡ଼ତ ସମ୍ମାନ

କେଉଁଠି ? କ୍ୟୁରୀ ଅନ୍ତର କଣ୍ଟକିତ ହୋଇ ଉଠିଲା, ବ୍ୟଥାରେ ହୃଦୟ ଭରିଗଲା । ରକ୍ତ ଝରିଲା । ପ୍ରଣୟକୁ ପାଦରେ ଦଳିଦେଇ ସେ ପାରିସ୍ ଅଭିମୁଖେ ଚାଲିଲେ । ଗୋଟିଏ ଅପମାନକୁ ଅନ୍ତରରେ ଧରି କୋଟି ଜନତାର ସମ୍ମାନ ପାଇଁ ସେ କାମରେ ଲାଗିଲେ । ସାଧନାର ବାଟ ଖୋଲିଲା ପାରିସ ପୀଠରେ । ପାରିସ ବିଶ୍ୱ-ବିଦ୍ୟାଳୟରେ ସେ ବିଜ୍ଞାନ ପଢ଼ିବାକୁ ଲାଗିଲେ । ବାପା ତାଙ୍କର ପୋଲାଣ୍ଡରେ ଜଣେ ଗରିବ ଶିକ୍ଷକ । ପଇସା ପାଇବେ କାହୁଁ ଝିଅକୁ ଦେବାକୁ ? ଲୁଗାପଟା, ଖାଇବାପିଇବା ଓ ଘରଭଡ଼ା ପାଇଁ ଅନ୍ୟମାନେ ଝିନକୁ ଅନ୍ତତଃ କୋଡ଼ିଏ ଟଙ୍କା ଖର୍ଚ୍ଚ କରୁଥିବାବେଳେ କ୍ୟୁରୀଙ୍କ କପାଳରେ ଦୁଇଟଙ୍କାରୁ ବେଶୀ ଜୁଟୁ ନ ଥିଲା, ଅଥଚ କେତୋଟି ବର୍ଷ ଭିତରେ ସେହି କ୍ୟୁରୀଙ୍କୁ ଦୁଇଟି ପୁରସ୍କାରରେ ଦୁଇ ଲକ୍ଷ ଟଙ୍କା ମିଳିଲା । କିନ୍ତୁ ତାଙ୍କ ପାରିସ୍ ନର୍ଯ୍ୟାତନା ଶୁଣିଲେ ଖଣ୍ଡ-ପ୍ରସ୍ତରେ ବି ସହାନୁଭୂତି ନ ଦେଖାଇ ରହି ପାରିବ ନାହିଁ । ଖାଇବାକୁ କିଛି ନ ଥାଏ—ଖାଲି ଖଣ୍ଡେ ଖଣ୍ଡେ ଶୁଖିଲା ରୁଟି ଟିକିଏ ଲହୁଣୀ । ଏମିତିକି ଦିନଦିନ ଧରିଦିନ ଲେଖାଏ ଖାଲି ଗୋଟିଏ ଧଟା ଫଳ ଖାଇ ସେ ବଞ୍ଚି ରହୁଥିଲେ । କ୍ଲାସରେ ଥରେ ବେଞ୍ଚପାଖରେ ମୁଣ୍ଡ ବୁଲାଇଦେବାରୁ ବିବଶ ଭୂଇଁରେ ଖସି ପଡ଼ିଲେ । କାହିଁ ଧନୀପୁଅର ସୋହାଗ ସହାନୁଭୂତି, କାହିଁ ପାରିସ୍ ପୀଠରେ ବିଦ୍ୟାର୍ଥିନୀ ଭିକାରୁଣୀ ! ଜୀବନଟାରେ ଯେମିତି କିଛି ନାହିଁ । ଖାଲି ସାଧନା । ଏକ ଧ୍ରୁବତାରାକୁ ଅନାଇ ନାବିକ ତାର ନାଆ ବାହି ଚାଲିଛି ।

ପାରିସ୍‌ରେ କ୍ୟୁରୀ ଯେଉଁ ପ୍ଲେଟ ଘରଟିରେ ରହୁଥିଲେ; ସେଥିରେ ଝରକା ନ ଥିଲା । ଝରକା ବୋଲି ଗୋଟିଏ

ସ୍ୱାଭାବିକ । ଲୁଗାପଟା କିଛି ନ ଥାଏ, ଖାଲି ଶୀତ । ଘରେ
ଇଲେକ୍‌ଟ୍ରିକ୍ ହିଟ୍ ନ ଥାଏ ବା ନିଆଁ ନ ଥାଏ । ସାଂଘ ଶୀତରୁ ପାଇଁ
ମୋଟେ ଦି ବସ୍ତ୍ରା ହୋଇଲା । ହ୍ରେଷା'ର ନ କରି ତ ହୋଇଲା
ଅଣ୍ଟେ ନାହିଁ । ସବୁ ଦିନ ରାତିରେ ଶୋଇଲାବେଳେ କ୍ୟୁରୀ ତାଙ୍କ
ଟ୍ରଙ୍କ ଫିଟାଇ ସେଥିରେ ଯେତେ ଜିନଷ କନାପଟା ଥାଏ; ସବୁ ତାଙ୍କ
ବିଛଣା ଉପରେ ଗଦାଇଦେଇ ତାହା ତଳେ ଶୁଅନ୍ତି । ବେଳେ-
ବେଳେ ବେଶି କଷ୍ଟ ହେଲେ ଘରେଥିବା ଚଉକି ଉଡ଼ ଆଣି
ଆପଣା ଉପରେ ଲଦ ଦଅନ୍ତି, କାଳେ ଟିକଏ ହେଲେ ଶୀତ
ରକ୍ଷା ହୋଇଯିବ । ଦାରିଦ୍ର୍ୟର କି ତୀବ୍ର ଦଂଶନ । କାଲି ସକାଳେ
ଯା' ମସ୍ତକରେ ବିଶ୍ୱସମ୍ମାନର ମୁକୁଟ ମଣ୍ଡିତ ହେବ, ଆଜି ତାର
କି ନିର୍ଯ୍ୟାତନା—ବିଧିର କି ବିରାଟ ବିଡ଼ମ୍ବନା ! ପାରିସ୍ ଶୀତ ତ
ଆମ ପୁଷମାସ ଶୀତ ନୁହେଁ, ହିମାଳୟର ହାଡ଼ଭଙ୍ଗା ଶୀତ ।
ପାରିସ୍ ପଥରେ ଯାହାର ପାଦ ପଡ଼ି ନାହିଁ ତାକୁ ସେ ବୁଝାଇବା
ବଡ଼ କଷ୍ଟ । କ୍ୟୁରୀଙ୍କର ଯୌବନ ପଦ୍ମରେ ଶିଶିର ଲାଗି ସାରିଥାଏ,
ମାତ୍ର ମନ-ପଦ୍ମ ବିକଶିତ ହେବାକୁ ଲାଗିଲା । ଅନ୍ଧାରରେ ଆଙ୍ଗୁଠି
ଗଣି ସେ ଅଙ୍କ କଷିବାକୁ ଲାଗିଲେ । ବାହାର ପବନ ତାଙ୍କ
ଅନ୍ତଃ-ଆଲୋକକୁ ଲିଭାଇ ପାରିଲା ନାହିଁ, ସେ ବରଂ ଜଳି
ଉଠିଲା ।

ପାରିସ୍‌ରେ ତିନି ବର୍ଷ ରହିବା ପରେ ଜଣେ ଯୁବକଙ୍କ
ସହିତ ତାଙ୍କର ସାକ୍ଷାତ ହେଲା । ତାଙ୍କ ନାଁ ପେୟର କ୍ୟୁରୀ ।
ବୟସ ମୋଟେ ପଇଁତିରିଶ ବର୍ଷ; କିନ୍ତୁ ଫ୍ରାନ୍‌ସର ବିଶିଷ୍ଟ
ବୈଜ୍ଞାନିକମାନଙ୍କ ଭିତରୁ ସେ ଜଣେ । ମଣିକୁ କାଞ୍ଚନ ମିଳିଗଲା,
ସେମାନେ ବାହାହେଲେ । ଭାଗ୍ୟ ଯା'ର ଅନୁକୂଳ, ସେ ବିଜ୍ଞାନକୁ

ସ୍ଥାଡ଼ ବ୍ୟବସ୍ଥା ଧର୍ମାବୃତ୍ତକୁ ବନ୍ଦ ହୋଇଥାନ୍ତା କେମିତି ? ତାହା ହେଲା ବେଳେ ଦୁଇଜଣଙ୍କର ସମ୍ପତ୍ତି ବୋଲି ଦୁହିଁଙ୍କର ଦୁଖଣ୍ଡ ସାଇକେଲ ଥିଲା । ମଧୁଶଯ୍ୟା ପାଇଁ ପାରିସ ହୋଟେଲକୁ ନ ଯାଇ ସେମାନେ ଯାଇଥିଲେ ଗାଁଗହଳକୁ ସାଇକେଲରେ ଚଢ଼ି, ଛୁଟି, ବିସ୍କୁଟ ଖାଇ ଘାସ ଖୁପିରେ ସମୟ କଟାଇ, ରାତିରେ ରହୁଥିଲେ ପୁରୁଣାକାଳିଆ ଗାଁ ଧର୍ମଶାଳାରେ । ସେଠି ଇଲେକ୍ଟ୍ରିକ୍ ଆଲୁଅ ନ ଥିଲା ଖାଲି ମିଞ୍ଜି ମିଞ୍ଜି ସଞ୍ଜବତୀ ।

ତାହାପର ପରେ ଡାକ୍ତର ଉପାଧି ପାଇଁ କ୍ୟୁରୀ ଲାଗିପଡ଼ିଲେ ଓ ଶେଷରେ ଗୋଟିଏ ଅଜଣା ଜିନିଷ ଆବିଷ୍କାର କଲେ । ତା ନାଁ ଦେଲେ ରେଡ଼ିୟମ୍ । କାନ୍ସର ରୋଗ ପାଇଁ ଏହି ରେଡ଼ିୟମ ଔଷଧ ରୂପେ ବ୍ୟବହୃତ ହୁଏ । ଏ କଥା ଯେତେବେଳେ ସେମାନେ ଘୋଷଣା କଲେ, କୌଣସି ବୈଜ୍ଞାନିକ ତା ବିଶ୍ୱାସ କରିବା ପାଇଁ ରାଜି ହେଲେ ନାହିଁ । ସେମାନେ କହିଲେ—ଆମକୁ ରେଡ଼ିୟମ ଆଣି ସଫା ଦେଖା, ଆମେ ବାକ୍ୟରେ ବିଶ୍ୱାସ ନ କରି ବସ୍ତୁରେ ବିଶ୍ୱାସ କରୁଁ । ସେ କଥା ହେଲା । ସ୍ୱାମୀ ସ୍ତ୍ରୀ ଦୁହେଁ ହାତ ମିଳାଇଲେ । ପ୍ରତିଜ୍ଞା କଲେ, ସେମାନେ ନିଶ୍ଚୟ ଦୁନିଆକୁ ରେଡ଼ିୟମ୍ ଦେଖାଇବେ ।

ଚାରିବର୍ଷକାଳ ୧୮୯୮—୧୯୦୨ ପର୍ଯ୍ୟନ୍ତ ସ୍ୱାମୀ ସ୍ତ୍ରୀ ଦୁହେଁ ଭୋକଉପାସ ଭୁଲି କାମରେ ଲାଗିଲେ । ସାରା ଶୀତଋତୁ ପାଇଁ ଯେଉଁ କ୍ୟୁରୀଙ୍କୁ ଦୁଇବସ୍ତା କୋଇଲା ମିଳୁ ନ ଥିଲା, ସେହି କ୍ୟୁରୀ ଚଣାଠାକର ରେଡ଼ିୟମ୍ ପାଇବା ପାଇଁ ଆଠ ଟନ୍ ଲୁହା ଚଉଳାଇ ଥିଲେ । ଗବେଷଣାଗାର ନାହିଁ, ଘର ନାହିଁ, ଖାଲି ଗୋଟାଏ ଝିଣ୍ଟିଆ ଘର, ତଳ ଖୁହାଳ ଛପର ଖାଲି ଟିପ ।

ଲୁହାକୁଣ୍ଡରୁ ଧୂଆଁ ବାହାରି କଣୋଣି କ୍ୟୁରୀଙ୍କ ଆଖିକୁ ଖାଲି ଅଶ୍ରୁ ଅରୁଣ କରି ପକାଉଥିଲା । ଘୋର କଷ୍ଟ । ପ୍ରସବ କଷ୍ଟ ସିନା ନାରୀ ଜାଣେ; ପୁରୁଷ ଜାଣିବ କାହୁଁ ? ଗବେଷଣା କଷ୍ଟ ଆରମ୍ଭ ମାତ୍ରେ ପେୟର କ୍ୟୁରୀ ଯା'ବେ ବୁଝିବାକୁ ନାରାଜ । ଦଶମାସ କଷ୍ଟ ଯେ ଜାଣେ, ପୁତ୍ରମୁଖ ଦୁନିଆରେ ସେହି ଏକା ଅନୁଭବ କରେ । ତାଳ ପରି ସାଧନାରୁ ଜନ୍ମ ରେଡ଼ିୟମ୍ ବାହାରିଲା । ଜଗତ ରାଜ୍ୟରେ ଚମକି ପଡ଼ିଲା ।

୧୯୪୩ ମସିହା ପୃଥିବୀ ଇତିହାସରେ ନବଯୁଗ । ସେହିବର୍ଷ ରାଇଟ୍ ବ୍ରଦର୍ସ ଆକାଶରେ ଉଡ଼ିଲେ । ସେହିବର୍ଷ କାନ୍‌ସରବିନାଶୀ ରେଡ଼ିୟମ୍ ସୃଷ୍ଟି ହେଲା । ପୋଲାଣ୍ଡର ଭିକାରୁଣୀ କ୍ୟୁରୀ ପ୍ୟାରିସ୍‌ରେ ବିଜ୍ଞାନ-ରାଜରାଣୀର ମୁକୁଟ ପିନ୍ଧିଲେ, ନୋବେଲ୍ ପୁରସ୍କାର ପାଇଲେ ଅନ୍ୟୂନ ଏକ ଲକ୍ଷ ଟଙ୍କା । କିନ୍ତୁ କ୍ୟୁରୀ କହନ୍ତି—ସେହି ଦରିଦ୍ର ଜୀବନ, ସେହି ହାଡ଼ଭଙ୍ଗା ଶୀତ, କୋଟି ସମ୍ମାନରୁ ଭଲ । କାରଣ ସେତେବେଳେ ସେ ପ୍ରତି ମୁହୂର୍ତ୍ତ କାମ କରିବାର ସୁଯୋଗ ପାଉଥିଲେ, ପୁଣି ଯେଉଁ କାମ ପାଇଁ ସେ ପ୍ରାଣପାତ କରୁଥିଲେ । ସେତିକି ନୁହେଁ ୧୯୧୧ରେ ସେ ରସାୟନ ବିଜ୍ଞାନରେ ନୋବେଲ ପୁରସ୍କାର ପାଇଥିଲେ ।

କ୍ୟୁରୀ ଦରିଦ୍ର ଥିଲେ; ମାତ୍ର ମନ ତାଙ୍କର କେବେ ଦରିଦ୍ର ନ ଥିଲା । ନର ସେବାକୁ ସେ ନାରାୟଣ ସେବା ମନେ କରୁଥିଲେ । ରେଡ଼ିୟମ୍ ଘୋର ମୂଲ୍ୟବାନ୍ ବସ୍ତୁ, କାନ୍‌ସର ପରି ମହାବ୍ୟାଧିର ନିରୋଧକ । ଚାହିଁଥିଲେ ଦୁନିଆକୁ ଏହି ଜ୍ଞାନ ବିକ୍ରୟ କରି ସେମାନେ କୋଟି କୋଟି ଟଙ୍କାର କୋଠା ମହଲ ଗଢ଼ି ପାରିଥାନ୍ତେ; ମାତ୍ର

ଯେ ଦୁଃଖୀ, ସେ ସିନା ଦୁଃଖୀର ମନ ଚହ୍ନେ । କୋଟି ଲୋକଙ୍କର ସେବାରେ ଯାହା ଲାଗିବ; ତା ପାଇଁ ପଇସା ଆଦାୟ କରିବା ଅମନୁଷ୍ୟତା ହୁଅନ୍ତା ସିନା । ବ୍ୟୁସି ତା କଲେ ନାହିଁ । ବ୍ୟୁସିଙ୍କ ମନ, ମା'ର ମନ । ମା ନ ଥିଲେ ଦୁନିଆରେ [illegible] ସାହା ହୁଅନ୍ତା କିଏ ?

ଦୁନିଆରେ ଏ ଦାରିଦ୍ର୍ୟ ଓ ଦୟାର ପଟାନ୍ତର ନାହିଁ । ତେଣୁ ମାଡ଼ମ୍ ମସ୍ତକରେ ସମ୍ମାନର ମାଣିକ୍ୟମୁକୁଟ ମାଟିର ମଣିଷ ପକ୍ଷରେ ଆଶାର ଉତ୍ସ ହୋଇ ରହିବ ।

---

# ଜର୍ଜ ବାର୍ଣାଡ଼ ଶ

ଏ ଦୁନିଆରେ ଖୁବ୍ କମ୍ ଲୋକ ଅଛନ୍ତି, ଯାହାଙ୍କଠାରୁ ନାଁଟା କହିଦେଲେ ଲୋକ ବୁଝିଯିବେ । ଏମିତି ଭାଗ୍ୟବାନ ଦୁନିଆରେ ଖୁବ୍ କମ୍ । ଏହି ଭାଗ୍ୟମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ଜି. ବି. ଏସ୍—ପୁରା ନାଁ ଜର୍ଜ ବାର୍ଣାର୍ଡ ଶ । ମାତ୍ର ସାଧାରଣତଃ ତାଙ୍କୁ ଲୋକେ ଜି. ବି. ଏସ୍. ବା ଖାଲି 'ଶ' ବୋଲି ଡାକନ୍ତି । ସେ ଜନ୍ମ ହୋଇଥିଲେ ଆୟାରଲଣ୍ଡରେ; କିନ୍ତୁ ମଲେ ଲଣ୍ଡନରେ । ଆୟାରଲଣ୍ଡରଟି ଲୋକ, ଇଂଲଣ୍ଡର କବି; କିନ୍ତୁ ସାରା ଦୁନିଆର ଚିନ୍ତାନାୟକ ।

ରବି ଠାକୁର ମାଟ୍ରିକ୍ ପାସ୍ ନ କରି ମଧ୍ୟ ବିଶ୍ୱକବି ହେଲେ । ବାର୍ଣାର୍ଡ ଶ କିନ୍ତୁ ମୋଟେ ପାଞ୍ଚବର୍ଷ ପଢ଼ି ପଚାଶ ବର୍ଷ ହେଲା ଲୋକଙ୍କର ଚିନ୍ତାଧାରାକୁ ଚହଲାଇ ଦେଉଛନ୍ତି । ଲକ୍ଷେ ଟଙ୍କାର ନୋବେଲ ପୁରସ୍କାର ତାଙ୍କୁ ଦତ୍ତ ହେଲା; ମାତ୍ର ସେ କୌଣସି ଆଗ୍ରହ ପ୍ରକାଶ ନ କରିବାରୁ ଲକ୍ଷେ ଟଙ୍କାର ଥଳି ତାଙ୍କ ହାତରେ ଛୁଆଁଇ ଦେଇ ସାହିତ୍ୟ ସେବାପାଇଁ ତାହା ଦାନ କରି-ଗଲେ । ଆଜି ଦୁନିଆରେ କେତେ ଜଣ ଲୋକ ଲକ୍ଷେ ଟଙ୍କା ଶୁଣି ନୋବେଲ୍ ପୁରସ୍କାରକୁ ଏମିତି ଟାମଣିଆଳି ଦୃଷ୍ଟିରେ ଦେଖିପାରନ୍ତି କହନ୍ତୁ ତ ! ଯା'ର ନିଜ ଉପରେ ବିଶ୍ୱାସ ଥିବ, ସେ କେବଳ ତା କରିପାରେ । ଶ'ଙ୍କର ତା ଥିଲା ।

ଜି. ବି. ଏମ୍. ଭାରି ଗରିବ । ତାଙ୍କୁ ପନ୍ଦରବର୍ଷ ବେଳେ ତାଙ୍କ ଆର୍ଥିକ ଅବସ୍ଥା ଏତେ ଖରାପ ହୋଇଗଲା ଯେ ସେ ସ୍କୁଲରୁ

କରିବାକୁ ବାଧ୍ୟ ହେଲେ । ଯେଉଁ ଜି. ବି. ଏସ୍. ପରେ ଲକ୍ଷେ ଟଙ୍କାର ଥଳିକୁ ଆଡ଼ଆଖିରେ ବି ଅନାଇଲେ ନାହିଁ, ଯନ୍ତଲେ ସେ ମାସକୁ ମୋଟେ ତେର ଟଙ୍କା ଦରମାରେ କ୍ଲର୍କ କରୁଥିଲେ । ଛାଲପକା ଟ୍ରାଉଜର ଓ ଛିଣ୍ଡା ଯୋତା ପିନ୍ଧି ଲଣ୍ଡନ ରାସ୍ତାରେ ମୁଣ୍ଡ ନୁଆଁଇ କେତେ ବାଇ ସେ ବୁଲିଥିଲେ; କିନ୍ତୁ ସେଇ ବାର୍ଣ୍ଣାଡ଼ ଶ'ଙ୍କ ମୃତ୍ୟୁବେଳେ ସାରା ପୃଥିବୀର ରେଡ଼ିଓ ଗର୍ଜି ଉଠିଥିଲା ଓ ନ୍ୟୁୟର୍କ ସହରର ବଡ଼ ବାଣ୍ଡିର ସମସ୍ତ ଆଲୋକ ତାଙ୍କୁ ସମ୍ମାନ ଦେଖାଇବା ପାଇଁ ମୁହୂର୍ତ୍ତକ ପାଇଁ ମଳିନ ପଡ଼ି ଯାଇଥିଲା । ଆମେରିକା ବଡ଼ବାଣ୍ଡିର ଆଲୁଅ ଏ ଦୁନିଆର କେତେ ଜଣଙ୍କ ପାଇଁ ଲିଭେ ? କ୍ଲର୍କ ଭିତରେ ସେ ସେକ୍ସପିଅର, ମିଲ, ସ୍ପେନସରଙ୍କ ସମସ୍ତ ଲେଖା ପଢ଼ି ଦେଇଥିଲେ । ମନ ତାଙ୍କର ବଦଳି ହୋଇ ଉଠିଲା । ମୂଲ୍ୟବାନ ଜୀବନଟାକୁ କରଣୀ ଫାଇଲରେ ପୋତି ମାରିବାକୁ ସେ ନାରାଜ ହେଲେ । ମୁକ୍ତ ଆକାଶଟାକୁ ମାଠିଆ ଭିତରେ ପୁରାଇ ରଖିପାରନ୍ତା କିଏ ?

୧୮୭୬ ମସିହାରେ ସେ ଆୟାରଲାଣ୍ଡ ଛାଡ଼ି ଲଣ୍ଡନକୁ ପଳାଇ ଆସିଲେ । ଦିନ ରାତି ଖାଲି ଲେଖାପଢ଼ାରେ ଲାଗିଲେ । ମନ ହେଉ ବା ନ ହେଉ, ନିତି ପାଞ୍ଚ ପୃଷ୍ଠା ନିଶ୍ଚୟ ଲେଖିବେ । ତାଙ୍କର ଏମିତି ପିଲାଳିଆ ମନ ଯେ; ଠିକ୍ ପାଞ୍ଚ ପୃଷ୍ଠା ଯେଉଁଠି ହେବ, ସେଇଠି ଛାଡ଼ିଦେବେ । ଗୋଟିଏ ବାକ୍ୟର ଲେଖା ଅଧା ହୋଇଥିଲେ ମଧ୍ୟ ତାକୁ ସେ ପୂରା କରିବେ ନାହିଁ । ସେ ବଡ଼ ବଡ଼ ଉପନ୍ୟାସ ଲେଖି ଇଂଲଣ୍ଡ ଓ ଆମେରିକାର ପ୍ରକାଶକମାନଙ୍କ ପାଖକୁ ପଠାଉଥିଲେ; ମାତ୍ର ଜଣେ ହେଲେ କେହି ଲେଖା

ପ୍ରକାଶ କରିବାକୁ ରାଜି ହେଲେ ନାହିଁ । ଅସଲ କଥା ହେଉଛି, ତାଙ୍କ ଚିନ୍ତାଧାରା କେହି ଧରିପାରୁ ନ ଥିଲେ ।

ନିଜେ ତ କିଛି ରୋଜଗାର କରିପାରୁ ନ ଥିଲେ; ବରଂ ମା'ଙ୍କ ରୋଜଗାରରେ ଚଳୁଥିଲେ । ସେ କେବଳ ଇଲେକ୍‌ସନ ଡାମନଙ୍କ ପାଇଁ ଭୋଟ ଗଣତି କରି ତେରଟି ମାତ୍ର ଟଙ୍କା ପାଉଥିଲେ । ଉପନ୍ୟାସ ଲେଖି ସେ ବିଶେଷ କିଛି ପାଇଲେ ନାହିଁ; ମାତ୍ର ନାଟକ ଓ ସମାଲୋଚନା ଲେଖି କିଛି କିଛି ପାଇଲେ । ଫଳରେ, ପ୍ରଥମ ପଚିଶ ବର୍ଷ ଯାହା ପାଇଲେ, ସେ କିଛି ନୁହେଁ ।

ପୃଥିବୀରେ ସେ କାହାକୁ ଥଟ୍ଟା ନ କରନ୍ତି, ଏମିତି କେହି ନାହିଁ । ଡାକ୍ତର, ମାଷ୍ଟର, ଓକିଲ, ଜଜ୍, ବାହାଘର, ଘୁଡ଼ଦୌଡ଼ ସବୁ ଶ୍ରେଣୀର ଲୋକ ଓ ଅନୁଷ୍ଠାନକୁ ଏମିତି ବିଦ୍ରୂପ କରି ଲେଖନ୍ତି ଯେ ପଢ଼ିଲାମାତ୍ରେ ମନେ ହୁଏ ସେ ଯାହା କହୁଛନ୍ତି ସତ; ମାତ୍ର ଏହି ବାର୍ଣାର୍ଡ଼ ଶ' ଏତେ ଲାଜୁଆ ଥିଲେ ଯେ କାହାକୁ ଫାଟି ପିଟାଇ ପାରନ୍ତି ନାହିଁ । ଜଣେ ବନ୍ଧୁଙ୍କୁ ଦେଖା କରିବାକୁ ଯାଇ ତାଙ୍କ କବାଟରେ ଖଡ଼ ଖଡ଼ କରିବା ପାଇଁ ଡର ବି ସେ ଫେରି ଆସିଛନ୍ତି; ମାତ୍ର ସମୟ ଆସିଲା, ସେହି ବାର୍ଣାର୍ଡ଼ ଶ ରାସ୍ତା ଛକରେ, ଗୀର୍ଜା ଘରେ, ସାଧାରଣ ପ୍ଲାଟଫର୍ମରେ ବଜ୍ରଗମ୍ଭୀର ସ୍ୱରରେ ବକ୍ତୃତା ଦେଲେ ଓ ଜନତା ମୂକ ହୋଇ ତା ଶୁଣିଲା । ସେହି ସମସ୍ତ ଟଳରେ ଗୋଟିଏ ମାତ୍ର ପ୍ରେରଣା ଥିଲା । ଲୁହାର ମଣିଷ ଷ୍ଟାଲିନଙ୍କ ଜୀବନରେ କାର୍ଲମାର୍କସଙ୍କର ଯେଉଁ ତତ୍ତ୍ୱ ଅସୀମ ଉନ୍ମାଦନା ସୃଷ୍ଟି କରିଥିଲା, ଶ'ଙ୍କ ଜୀବନରେ ତାହା ଭବିଷ୍ୟତର ମାର୍ଗ ସମ୍ପୂର୍ଣ୍ଣ ପରିଷ୍କାର କରିଦେଲା । ଦିନ ଦିନ, ମାସ ମାସ, ବର୍ଷବର୍ଷଧରି ସେ ସବୁପ୍ରକାର ଅନୁଷ୍ଠାନରେ ବକ୍ତୃତା

ଚାଲିଥିଲେ । ପୃଥିବୀର ବିଶିଷ୍ଟ ବକ୍ତାମାନଙ୍କ ନାମ ତାଲିକାରେ ତାଙ୍କ ନାମ ସ୍ଥାନ ପାଇଲା । ସେହିପରି ଲାଜକୁଳା, ଭୀତ ଜି. ବି. ଏସ୍. ଆଜି ବିଶ୍ୱବକ୍ତା ହୋଇ ଛିଡ଼ା ହେଲେ । ୧୮୯୬ ମସିହାରେ ଜଣେ ଯୁବତୀଙ୍କ ସହିତ ତାଙ୍କର ଦେଖାହେଲା । ଦୁହିଁଙ୍କ ଭିତରେ ବେଶ୍ ବନ୍ଧୁତା ହୋଇଗଲା । ମାତ୍ର ଥରେ ସେ ଶ'ଙ୍କୁ ଭୀଷଣ ଗାଳି ଦେଲେ । ଶ'ଙ୍କଠୁ ବଳି ସ୍ୱାର୍ଥପର ଲୋକ ସେ ଦୁନିଆରେ ଦେଖି ନାହାନ୍ତି ବୋଲି କହିଲେ । ତାପରେ ସେ ଯୁବତୀ ଇଟାଲୀ ଚାଲିଗଲେ । ସେ ଯିବା ପରେ ଶ' ଏମିତି ରୋଗରେ ପଡ଼ିଲେ ଯେ ତାଙ୍କ ନିକଟକୁ ତାର ହେଲା; ସେ ଫେରି ଆସିଲେ । ବିବାହ ସୂତ୍ର ଓ ଅନୁମତି ପତ୍ର କିଣା ହୋଇ ଆସିଲା । ବୟାଳିଶ ବର୍ଷ ବୁଢ଼ାଙ୍କର ବିଭାଗଣ୍ଠି ଫିଟିଲା । ପଇଁଚାଳିଶ ବର୍ଷ ସେମାନେ ଏକାଠି ରହିଲେ ।

ମୃତ୍ୟୁକୁ ବି ତାଙ୍କର ଭୟ ବୋଲି ଏତେ ଟିକେ ନ ଥିଲା । ନବେ ବର୍ଷ ବୟସରେ ମଧ୍ୟ ସେ ନିଜକୁ ଯୁବକ ମନେ କରୁଥିଲେ । ସେ ଏଣୁ ୧୯୫୧ ମସିହାରେ ମରିଛନ୍ତି । ତାଙ୍କର ସମସ୍ତ ସମ୍ପତ୍ତି ସେ ଦାନ କରିଛନ୍ତି ଇଂରେଜୀ ବନାନଶୁଦ୍ଧି ପରିବର୍ତ୍ତନ କରିବା ପାଇଁ । ତାଙ୍କର ଧାରଣା, ଇଂରେଜୀ ସଭ୍ୟତାରେ ଯେତେ ଦୁର୍ବଳତା ଅଛି, ସବୁଠାରୁ ବଡ଼ ଦୁର୍ବଳତା ଇଂରେଜୀ ଭାଷାର ବନାନ ।

———

# ଗଣିତଜ୍ଞ ଆଇନ ଷ୍ଟାଇନ୍

ଦକ୍ଷିଣ ଜର୍ମାନୀରେ ଗୋଟିଏ ଛୋଟ ସହରରେ ବୁଲନ୍ତ-ଫେରେ ଏବେ ବି ଲୋକେ ହାତ ଠାରି ଛୋଟିଆ ଘର ଖଣ୍ଡିଏ ଦେଖାଇ ଦିଅନ୍ତି ଓ କହନ୍ତି, "ଏଇଠି ଆଇନ୍‌ଷ୍ଟାଇନ୍ ଜନ୍ମ ହୋଇଥିଲେ । ମଣିଷ ଅବାକ୍ ହୋଇଯାଏ । ସବୁ ମହାପୁରୁଷ କଣ କୁଡ଼ିଆରେ ଜନ୍ମ ହୁଅନ୍ତି ! ଗରିବଙ୍କୁ ଲୋକେ ଘୃଣା କରନ୍ତି ସତ, କିନ୍ତୁ ସଙ୍କୀର୍ଣ୍ଣ କ୍ଷୁଦ୍ର ଓ ଅନ୍ଧାରୁଆ କୁଡ଼ିଆରୁ ସବୁ କାଳେ ଜନ୍ମ ହୁଏ ଅଲୌକିକ ଆଲୁଅ । ଜର୍ମାନୀର ଯୋଗଜନ୍ମା ଆଇନ୍ ଷ୍ଟାଇନ୍ ସେହିପରି ଗୋଟିଏ ଆଲୁଅ ।

ବର୍ତ୍ତମାନ ପୃଥିବୀରେ ଆଇନ୍‌ଷ୍ଟାଇନ୍‌ଙ୍କୁ ବଳି ଗଣିତ ତତ୍ତ୍ୱଜ୍ଞ ଆଉ କେହି ନାହାନ୍ତି; ମାତ୍ର ସେ ଦିନେ ବସ୍ କଣ୍ଡକ୍ଟର ସଙ୍ଗେ ପଇସା ଗଣାରେ ଗଣ୍ଡଗୋଳ କରୁଥିଲେ ବୋଲି ବସ୍ କଣ୍ଡକ୍ଟର କହିଥିଲେ, ଆଇନ୍‌ଷ୍ଟାଇନ୍‌ଙ୍କୁ ଅଙ୍କ ଟିକିଏ ଆସେ ନାହିଁ । ସେହି ଆଇନ୍‌ଷ୍ଟାଇନ୍ ବି ଦିନେ ସ୍କୁଲର କ୍ଲାସରେ ପଛ ବେଞ୍ଚରେ ବସୁଥିଲେ ଓ ତାଙ୍କୁ ଦେଖି ମାଷ୍ଟ୍ରେ ପାଟି କରୁଥିଲେ 'ଗଧ' । ସେହି ଆଇନ୍‌ଷ୍ଟାଇନ୍ ଯେଉଁ ଗଣିତତତ୍ତ୍ୱ ବାହାର କରିଛନ୍ତି, ତା ବୁଝାଇବା ପାଇଁ ଆଜି ନଅ ଶହ ପୁସ୍ତକ ଲେଖା ହେଲାଣି; କିନ୍ତୁ ଏହି ସାରା ଦୁନିଆରେ ବାର ଜଣ ମାତ୍ର ସେ ତତ୍ତ୍ୱ ବୁଝିଛନ୍ତି ବୋଲି ଆଇନ୍‌ଷ୍ଟାଇନ୍ କହନ୍ତି ।

କେହି ତାଙ୍କୁ ପଚାରିଲେ ତାଙ୍କ ବିଶିଷ୍ଟ ଆପେକ୍ଷିକ ତତ୍ତ୍ୱକୁ ସେ ଗୋଟିଏ କଥାରେ ବୁଝାଇ ଦିଅନ୍ତି । ସେ କହନ୍ତି, "ଯଦି ଆପଣ ଜଣେ ସୁନ୍ଦରୀ ବାଳିକା ସଙ୍ଗେ ବସି ମଜା ଗପ କରନ୍ତି, ତେବେ ଘଣ୍ଟାଟା ଆପଣଙ୍କୁ ପାଞ୍ଚ ମିନିଟ ପରି ଲାଗିବ; କିନ୍ତୁ ଯଦି ଆପଣ ଟିକିଏ ତତଲା ଲୁହା ଉପରେ ପାଞ୍ଚ ମିନିଟ ବସନ୍ତି, ତେବେ ପାଞ୍ଚ ମିନିଟଟା ଘଣ୍ଟାଏ ପରି ଲାଗିବ । ଯଦି ଏଥିରେ ଆପଣଙ୍କର ବିଶ୍ୱାସ ନ ହେଉଛି, ତେବେ ମୁଁ ଜଣେ ସୁନ୍ଦରୀ ବାଳିକା ସଙ୍ଗେ ବସୁଛି, ଆପଣ ତତଲା ଲୁହାରେ ବସି ପରୀକ୍ଷା କରନ୍ତୁ ।" ବେଶ୍ ମଜା କଥା ତ !

ଜର୍ମାନ ସରକାର ତାଙ୍କୁ ସମ୍ମାନ ଦେଖାଇବା ପାଇଁ ତାଙ୍କର ଏକ ପ୍ରତିମୂର୍ତ୍ତି ପୋର୍ଟସଡ଼ାମଠାରେ ରଖିଛନ୍ତି ଓ ଜଳକ୍ରୀଡ଼ା ପାଇଁ ତାଙ୍କୁ ଗୋଟିଏ ଡଙ୍ଗା ଦେଇଛନ୍ତି; କିନ୍ତୁ ହିଟଲରଙ୍କ ଶାସନବେଳେ ଅତ୍ୟାଚାରରୁ ଆପଣାକୁ ରକ୍ଷା କରିବା ପାଇଁ ସେ ଆମେରିକା ଚାଲି ଯାଇଥିଲେ ।

ଗଣିତ ଶିକ୍ଷକମାନେ ସାଧାରଣତଃ ଚିନ୍ତାଶୀଳ । ନିୟମ ଅନୁସାରେ ସବୁ କାମ କରିବାକୁ ସେମାନେ ଖୁବ ଭଲ ପାଆନ୍ତି । ପୃଥିବୀରେ ଶ୍ରେଷ୍ଠ ଗଣିତଜ୍ଞ ଆଇନ ଷ୍ଟାଇନଙ୍କ ଚିନ୍ତାରେ ଆଇନ ଶୃଙ୍ଖଳା ଅଛି; ମାତ୍ର ଦୈନନ୍ଦିନ ଜୀବନରେ କୌଣସି ଶୃଙ୍ଖଳା ନାହିଁ । ସେ ଯେତେବେଳେ ଯାହା ମନ ହୁଏ, କରି ଯାଆନ୍ତି । ସେ କହନ୍ତି, "କୌଣସି ଆଇନ ମାନ ନାହିଁ, କାହା କଥା ଶୁଣ ନାହିଁ ।" ଆଶ୍ଚର୍ଯ୍ୟ କଥା । ଯେଉଁ ଅଙ୍କ ବିଦ୍ୟାରେ ଖାଲି ଆଇନ

ଓ ଧାର ଛଡ଼ା ଅନ୍ୟ କିଛୁ ନାହିଁ, ତାର ଶ୍ରେଷ୍ଠ ସାଧକ କହନ୍ତି ଆଇନ୍ ମାନ ନାହିଁ ! ବଡ଼ ବିଚିତ୍ର କଥା । ଯେତେ କେବେ ବନ୍ଧୁବାନ୍ଧବ ଜୁଟନ୍ତି ଓ ତାଙ୍କ ସ୍ତ୍ରୀ ସ୍ନୋପାଣି ଠିକ୍ଠାକ୍ କରି ଆଇନ୍ଷ୍ଟାଇନ୍ଙ୍କୁ ଡାକନ୍ତି, ସେ ପାଟିକରି ଉଠନ୍ତି, "ନାହିଁ ମୁଁ ଯିବି ନାହିଁ । ମୁଁ ଯାଉଛି ଏଠୁ ପଳେଇବି, ତୁମେ ମୋତେ ଏଠି କାମ କରାଇଦେବ ନାହିଁ ।" ଦୁନିଆରେ କିଏ ସାନ ବଡ଼ ସବୁରି ଜୀବନ ସମାନ ? ଆଇନ୍ଷ୍ଟାଇନ କଣ; ଅଇଁଠା ଅବଧାନ କ'ଣ କା ଘରେ ଏକଥା ନ ହୁଏ ? ଭଗବାନଙ୍କ ରାଜ୍ୟରେ ବଡ଼ ସାନ ସମସ୍ତଙ୍କ ମନ ଏକା ସୂତାରେ ବନ୍ଧା । ପୁଣି ଟିକିଏ କଅଁଳେଇ ସଅଁଳେଇ ଦେଲେ ମୋ ଧନ, ମୋ ସୁନା ବୋଲି ଆଦର କଲେ ବୃଝି ଆସନ୍ତି ।

ଆଇନ୍ଷ୍ଟାଇନ୍ କେଡ଼େ ବଡ଼ ଲୋକ; କଳ୍ପନା କରିବା କଠିନ । ଆଜି ପୃଥିବୀର ସମସ୍ତ ବିଜ୍ଞାନ ଗଣିତ ଉପରେ ନିର୍ଭର କରୁଛି; ମାତ୍ର ଗଣିତର ଭବିଷ୍ୟତ ଯେଉଁ ଲୋକ କେବଳ ବାଟ ଧରି ଚାଲିଛନ୍ତି, ସେ ହେଉଛନ୍ତି ଆଇନ୍ଷ୍ଟାଇନ୍ ଅଥଚ ତାଙ୍କ ଜୀବନ କେଡ଼େ ସାଦାସିଧା, କେତେ ଟ୍ରୋଟ ଟ୍ରୋଟ କଥାରେ ପୂର୍ଣ୍ଣ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସେ ମଇଳା ଲୋକ୍ସ୍ କୋଟ୍ସ୍ ଲୁଗାପଟା ପିନ୍ଧି ପଦାକୁ ବାହାରନ୍ତି । ଗାଧୁଆ ଘରେ ଗୀତ ଗାଆନ୍ତି, ହୁଇସିଲ ବଜାନ୍ତି । ଗାଧୋଇବା କୁଣ୍ଡରେ ବସି କ୍ଷିଅର ହୁଅନ୍ତି । ଯେଉଁ ସାବୁନ ଦେହରେ ଲଗାନ୍ତି, ସେହି ସାବୁନରେ କ୍ଷିଅର ହୁଅନ୍ତି । ପୁଣି ଯୁକ୍ତି କରନ୍ତି, ଦୁଇଟା ସାବୁନ ଲଗାଇଲେ ଜୀବନ ଜଟିଳ ହୋଇପଡ଼ିବ । ପ୍ରକୃତରେ ଗଣିତ ତତ୍ତ୍ୱ ସମାଧାନ କରିବା ପାଇଁ ସେ ଲାଗିଛନ୍ତି, ତାଙ୍କରି ଏ ସାବୁନ ତତ୍ତ୍ୱ

ସମାଧାନ କରିପାରିବ କିଏ ? ହସିବା କଥା । ସେ ବର୍ବର କହନ୍ତୁ, ସେ ଖୁବ ସୁଖୀ, କାରଣ ସେ କାହାଠାରୁ କିଛି ଚାହାନ୍ତି ନାହିଁ—ନା ଧନ, ନା ସମ୍ମାନ, ନା ପ୍ରଶଂସା । ତାଙ୍କ ସଙ୍ଗୀତ ଭଲ ତ ସେ ଭଲ, ତାଙ୍କ ନାଆଁଟି ଭଲ ତ ସେ ଭଲ । ଶିଶୁ ଓ ଜ୍ଞାମାଙ୍କର ମନ ବୋଧହୁଏ ଏକ ପ୍ରବାହର ଦୁଇ ଧାର ।

# ଅଠେଇଶ ଟଙ୍କିଆ ସ୍କୁଲମାଷ୍ଟର
# ଓଡ଼ିଆ ସାହିତ୍ୟର ସେନାପତି

୧୮୪୩ ମସିହା । ଆଜଠୁ ସେ ଦିନ ଢେର ତଫାତ୍ ବିଶେଷତଃ ଓଡ଼ିଶାରେ । ଆଜିର ଭୁବନେଶ୍ୱର ରାଜଧାନୀ, ହୀରାକୁଦ ବନ୍ଧ ସେତେବେଳେ ଓଡ଼ିଆ ମନର ସୀମା ପର୍ଯ୍ୟନ୍ତ ଛୁଇଁ ନ ଥିଲା । ମାତ୍ର ଚାଳିଶ ବର୍ଷ ହେଲା ଓଡ଼ିଶା ଇଂରେଜମାନଙ୍କ ହାତକୁ ଆସିଥିଲା; କିନ୍ତୁ ମରହଟ୍ଟା ବର୍ଗୀ ନାଗାଭୁସାହଙ୍କ ଆକ୍ରମଣ ଲୋକେ ଭୁଲି ନ ଥିଲେ । ଖାଲି ଅନ୍ଧାର । ବାହାରେ ଯେତିକି ବଣ ଜଙ୍ଗଲ, ଭିତରେ ସେତିକି ଅଜ୍ଞତା, ଅତ୍ୟାଚାର । ଆଜି ସେ ଜୀବନଟା କଳ୍ପନା କରିବା କଠିନ । ଓଡ଼ିଆ ଜାତି ଖାଲି ହା-ହୁତାଶମୟ ହୋଇ ପଡ଼ି ରହିଥାଏ । ସେତିକିବେଳେ ବାଲେଶ୍ୱର ମଲ୍ଲିକାଶପୁର ଗାଁରେ ଗୋଟିଏ ଗରିବ ଘରେ ଜନ୍ମ ହେଲେ ଫକୀରମୋହନ । ସେ ଦିନ ମକର ସଂକ୍ରାନ୍ତି, ଜାନୁୟାରି ମାସ ଶୁକ୍ରବାର ।

ଅନେକ ଦିନରୁ ଓଡ଼ିଶାରେ ତଅପୋଇ ଯୁଗ ଶେଷ ହୋଇଥିଲା; ଆଉ ତାର ସୁମାତ୍ରା, ବୋର୍ଣ୍ଣିଓକୁ ସାଧବ ପୁଅର ବୋଇତ ବାହି ଯାଉ ନ ଥିଲା, ଖାଲି ବାଲେଶ୍ୱର ବନ୍ଦରରୁ ଲୁଣ ବୋଝେଇ ବୋଇତ ମାନ୍ଦ୍ରାଜ, ସିଂହଳ ଆଡ଼କୁ ଯାଉଥିଲା । ଯାହା ସହସ୍ର ବୋଇତରେ ମାଲ ମାନସରୋବରରେ ସତେ ଯେମିତି ପଦ୍ମଭୋଜୀ ରାଜହଂସର ଦଳ । ଲୁଣ ବ୍ୟବସାୟର କେନ୍ଦ୍ର ଗୋଟିଏ ବନ୍ଦରରେ ଏ ଜାତିର ସେନାପତି ଫକୀରମୋହନ ସେତେବେଳେ ପାଲ ସିଲେଇ କରି ସମୟ କାଟୁଥିଲେ । ମୂକ ଓଡ଼ିଆ ଜାତିକୁ

ସେ ଭାଷା ହେବେ, ଅମୃତ ସାହିତ୍ୟ ଲେଖି ଅମର ହେବେ; କିଏ କଳ୍ପନା କରିଥିଲା ? ଆମର ଆଜ ହଜାର ହଜାର ବହି, ଶହ ଶହ ପ୍ରେସ୍, ମାତ୍ର ସେତେବେଳେ ଲୋକେ ଏତିକି ଜାଣି ନ ଥିଲେ ଯେ ଗୋଟାଏ ଯନ୍ତ୍ର ସାହାଯ୍ୟରେ ଅକ୍ଷର ଲେଖି ବହି ଛପା ହୁଏ । ତେଣୁ ସେନାପତିଙ୍କ ଛାପାଖାନାଠାରେ ରଥଯାତ୍ରା ଭିଡ଼ । ଲୋକଙ୍କ କଥା ପଚୁରେ କିଏ, ରାଜରାଣୀ ପର ଦେଖି ଆସନ୍ତି । ସେ କାଳର ରାଜରାଣୀ ତଳନ୍ତୁ ବସ୍ତୁଟି !

ଫକୀରମୋହନଙ୍କର ଦୁଃଖରେ ଜନ୍ମ, ଦୁଃଖରେ ହିଁ ମୃତ୍ୟୁ । ପିଲାଦିନେ କଠିନ ରୋଗରେ ପଡ଼ି ସେ ବଡ଼ କଷ୍ଟରେ ମୃତ୍ୟୁରୁ ରକ୍ଷା ପାଇଥିଲେ । ପିଲାଦିନୁ ତ ବାପା ମା ମରିଥିଲେ । ମରୁଭୂମିର ସାହାରା ପରି ଏକମାତ୍ର ଆଶ୍ରୟ ତାଙ୍କର ଜେଜେମା କୁଚିଳା ଦେବୀ । ଫକୀର ସେତେବେଳେ ବଢ଼ିଗଲେ । ଜେଜେମା ତାଙ୍କୁ ଫକୀର ବେଶରେ ଦାଣ୍ଡରେ ବୁଲାଉଥିଲେ । ଦେହରେ ଗୋଟିଏ ପାଇଜାମା ଖଣ୍ଡେ ଲୁନ୍ଥୁତା, ମୁଣ୍ଡରେ ଗୋଟିଏ ଫକୀର ଟୋପି ଓ ମୁହଁରେ ତାଙ୍କର ନାନା ରକମର ରଙ୍ଗ । ତାଙ୍କ ମୁହଁରେ ଯେତିକି ରଙ୍ଗ-ଲାଗିଥିଲା, ଓଡ଼ିଆ ଜାତିକୁ ବୋଧହୁଏ ସେ ସେତିକି ରଙ୍ଗରେ ହସାଉଛନ୍ତି । ଫକୀରମୋହନଙ୍କ ଗଳ୍ପ ପଢ଼ି କି ଅଥଚ ହସିବ ନାହିଁ, ଏମିତି ଲୋକ ନାହିଁ । ଗାଁ ମାଟିରେ ତାଙ୍କର ଜନ୍ମ, ଗାଁ ମାଟିରେ ତାଙ୍କର ମୃତ୍ୟୁ, ତେଣୁ ସେ ଜାତିକୁ ଶୁଣାଇଛନ୍ତି ଗାଁ ଚଉକିଦାର, ଗାଁ ମାମଲତକାର ଓ ଚମ୍ପାଆଣୀର କଥା । ସସ୍ତା ରାଜ୍ୟର କଳ୍ପନା କାହାଣୀ କହିବା ପାଇଁ କେବେହେଲେ ସେ ମନ ବଳାଇ ନାହାନ୍ତି ।

ଓଡ଼ିଶାରେ ସେତେବେଳେ ଶସ୍ତାକାଳ; କିନ୍ତୁ ହୀନାବସ୍ଥା ବେଳ । ଟଙ୍କାରେ ଚାଉଳ ଷାଠିଏ ସେର, ମାଛ ପଇସାକୁ ଦଶସେର ତେଲ ଟଙ୍କାକୁ ସାତ ସେର । ରାମଚନ୍ଦ୍ର ତ ରାଜା ନ ଥିଲେ, ଏ କଥା ଘଟୁଥିଲା କେମିତି ବିଶ୍ୱାସ କରି ହେଉ ନାହିଁ । ଅନ୍ତତଃ ସେ ସୌଭାଗ୍ୟ ଏ ପୃଥିବୀକୁ ଆଉ ଆସିବ ନାହିଁ । କିନ୍ତୁ ଠିକ୍ ଏହି ବେଳଟା ଓଡ଼ିଆ ଜାତିର ହୀନାବସ୍ଥା ବେଳ । ଓଡ଼ିଆ ଲୋକଙ୍କର ଶିକ୍ଷା ଦୀକ୍ଷା କିଛି ନାହିଁ । ବହିପତ୍ର ଦେଖିବାକୁ ସପନ । ବହି ଖୋଲି ବଙ୍କା ଓଡ଼ିଆ ଲେଖା । ପାଦ୍ରୀ ସାହେବଙ୍କ ବାଇବେଲ ବହି । ଆଜି ହଜାର ହଜାର ଓଡ଼ିଆ ବହି ଦେଖି ସେକାଳ କଥାଟା କଳ୍ପନା କରି ହୁଏ ନାହିଁ । ବାବୁ ବୋଇଲେ ଦେଶଯାକ ବଙ୍ଗାଳୀବାବୁ । ଓଡ଼ିଆ ଲୋକେ ବାବୁ ହେବାକୁ ଆହୁରି ଅନେକ ଦିନ ଥାଏ । ବଙ୍ଗାଳୀ ବାବୁମାନଙ୍କର ଧାରଣା ହେଲା, ଓଡ଼ିଆ ଗୋଟିଏ ଭାଷା ନୁହେଁ । ତାକୁ ଉଠାଇ ଓଡ଼ିଆରେ ବଙ୍ଗଭାଷା ଚଳାଇବାକୁ ହେବ । ସ୍କୁଲ ପରିଦର୍ଶକମାନେ ବଙ୍ଗାଳୀ, ପରାମର୍ଶ-ଦାତାମାନେ ବି ବଙ୍ଗାଳୀ । ଆଜି କଲିକତାର କୁଲି ଓଡ଼ିଆ ସେତେବେଳେ ମେଣ୍ଢା ଜମ୍ବା ତାଠୁ ଅଧିକ ନଥିବ । ଦେଶ ଅନ୍ଧକାର । ଫକୀରମୋହନ ନ ଥିଲେ ହୁଏ ତ କୋଟି କୋଟି ଓଡ଼ିଆ ଆଜି ବଙ୍ଗଳା ଭାଷା କହୁଥାନ୍ତେ; ମେଦିନୀପୁର ସରେଇକଳା ଜମ୍ବା ଖରସୁଆଁ ର ଦଶା ହେଉଥାନ୍ତେ । ମାତ୍ର ସେନାପତି ଫକୀର ମୋହନ ଏ ଜାତିର ସେନାପତି ହୋଇ ଠିଆହେଲେ । ବଙ୍ଗାଳୀ ବାବୁମାନଙ୍କର ସେ ହେଲେ 'ଶାଲବିଂ ଲିଡ଼ର' । କୌଣସି ଉପାୟରେ ଓଡ଼ିଆ ଭାଷାକୁ ରଖିବେ, ଏହି ପଣ ଧରି ସେ କାମ କଲେ । ଦୁର୍ବଳକୁ ବଳିବ ସାହା । ପଡ଼ୋଶୀ ବଙ୍ଗାଳୀ ଭାଇ ଯାହା ବୁଝିପାରିଲେ ନାହିଁ; ବିଦେଶୀ ବିଲାତି ସାହେବ ତାହା ବୁଝିପାରିଲେ ।

ବୀମସ୍, ଟମ୍ପୁଲ, ରେଭେନ୍‌ସା ପ୍ରଭୃତି ସାହେବମାନେ ବୁଝିଲେ, ଓଡ଼ିଆ ଭାଷା ସ୍ୱତନ୍ତ୍ର; ତାହା ବଞ୍ଚିବା ଉଚିତ ।

ଭାଷାକୁ ବଞ୍ଚାଇବାକୁ ହେଲେ ଛାପାଖାନା ଦରକାର । ବହୁ କଷ୍ଟରେ ପଇସା ସଂଗ୍ରହ କରି ଛାପାଖାନା ଆଣିଲେ । ଲୋକେ ଗଦା ହେଲେ ଦେଖିବା ପାଇଁ । ଆଶ୍ଚର୍ଯ୍ୟ କଥା; କଳଟାଏ ସତେ ବହି ଲେଖିବ ? ସତେ ଶୁଖିଲା କାଠରୁ ପାଣି ବୋହିବ ? ସତରେ ବୋହିଲା ନାହିଁ । ଲୋକେ ଗଦା ହୋଇଥାନ୍ତି ଦେଖିବା ପାଇଁ; ମାତ୍ର କଳ ଚାଲିଲା ନାହିଁ । ଲୋକେ ବୁଝିଲେ ଏଟା ଖାଲି ଗୋଟିଏ ଚାଲବାଜି, ମନ ନେବା ପାଇଁ ନେତାଙ୍କ ବକ୍ତୃତା ପରି ଫମ୍ପା କଥା । ଫକୀରମୋହନଙ୍କ ଛାତି ଦବିଗଲା । ମାତ୍ର ସାହସୀ ସେନାପତି ଡରିବା ଲୋକ ନୁହନ୍ତି । ପହିଲା ଯୁଦ୍ଧରେ ତ ଭୀମ ହାରେ । ପୁଣି କଲିକତାରୁ କଳ ଆସି ରାକ୍ଷସ ପରି ହଜାର ହଜାର ପତ୍ର ଛପାଇ ଦେଇଗଲା । ଓଡ଼ିଆ ଜାତିର ବିଶ୍ୱାସ ଫେରି ଆସିଲା । ଓଡ଼ିଆ ଭାଷା ବଞ୍ଚିଗଲା । ଫକୀରମୋହନ ବି ବଞ୍ଚିଗଲେ ।

ଫକୀରମୋହନ ବେଶି ପାଠ ପଢ଼ି ନ ଥିଲେ, ରବିନ୍‌ସନ କ୍ରୁସୋ କିମ୍ବା ଆରବିଆନ୍ ନାଇଟରୁ ଟପି ପାରି ନ ଥିଲେ; କିନ୍ତୁ କ୍ରୁସୋ ଜୀବନର ବିସ୍ମୟକର ଘଟଣାସବୁ ତାଙ୍କରି ଜୀବନରେ ଘଟିଥିଲା । ଢେଙ୍କାନାଳ ରାଜାଙ୍କ ରଙ୍ଗମହଲ, କେନ୍ଦୁଝର ରାଜାଙ୍କ ଦରବାର, ପାଲଲହଡ଼ା, ଡମପଡ଼ା ଓ ନୀଳଗିରିର ରାଜପ୍ରାସାଦ ସବୁଟି ଖାଲି ଗାଦ ପଡ଼ ନ ଥିଲା, ପାଞ୍ଚ ମଣ୍ଡଳେ ସମାନ ଉଠିଥିଲା । ଡମପଡ଼ା ରାଜାଙ୍କ ଜନ୍ମହାରୁ ଦୁଃଖାତ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ଟେବୁଲ ଉପରେ

ଥିଲା । ଢେଙ୍କାନାଳର ବଡ଼ଲୋକଙ୍କଥା ସେ ଆଉ କେଉଁଠି ଦେଖି ନ ଥିଲେ । ସେ କାଳର ପୁଣ୍ୟକୀର୍ତ୍ତି ରଜା ଭଗୀରଥ ମହେନ୍ଦ୍ର ବାହାଦୁର, ଏତେ ମୋଟା ଯେ ତାଙ୍କପାଇଁ ଗୋଟାଏ ଦୁଇଜଣିଆ ବଡ଼ ଚଉକି ସ୍ୱତନ୍ତ୍ର ତିଆରି ହୋଇଥିଲା । ଦରକାର ପଡ଼ିଲେ ଦୁଇଟା ଚଉକି ଯୋଡ଼ା ହେଉଥିଲା । ପୃଥିବୀର ଆଉ କେହି ଲୋକ ଦୁଇଟା ଚଉକିରେ ବସିବାର ଶୁଣା ନାହିଁ । ସେଇଥିପାଇଁ ପର ଢେଙ୍କାନାଳ କଥା ନ ଥାଇ ଟିକିଏ ଶାଳ ନାହିଁ । ସେତିକି ନୁହେଁ, ଓଡ଼ିଶାର ସେହି ଦୁର୍ଦ୍ଦିନ ଅନ୍ଧକାରରେ ଢେଙ୍କାନାଳରେ ଜଳୁଥିଲା ଜ୍ଞାନର ଆଲୋକ । ଇଂରେଜୀ ସ୍କୁଲ ଓ ସଂସ୍କୃତ ଟୋଲରେ ଜ୍ଞାନର ଏବଂ ଭାଷାର ପ୍ରଚାର ଚାଲିଥିଲା । ସେହି ସମସ୍ତ ପ୍ରଚାରରେ ଭାଗ ନେଲେ ଫକୀରମୋହନ । ସେ ଥିଲେ ସେଠିକାର ଦେୱାନ, ମା ବାପ, ହର୍ତ୍ତାକର୍ତ୍ତା । ଆଜି କୌଣସି ବଡ଼ ପାଠୁଆ ଓଡ଼ିଆଙ୍କ ଭାଗ୍ୟରେ ଏତେ ଗଡ଼ଜାତର ଦେୱାନ ହେବା ଜୁଟିଛି କି ନାହିଁ ସନ୍ଦେହ । ସେ ପର ଅଢ଼େଇ ଟଙ୍କାର ଗାଁ ଅବଧାନ ଥିଲେ । ସେଥିରେ ପୁଣି ଅଢ଼େଇ ଟଙ୍କା ଦରମା ବୋଲି ଜେଜମାଙ୍କର ଆନନ୍ଦର ସୀମା ନ ଥିଲା । ନ ହେବ ବା କିଆଁ ? ପଇସାକୁ ପର ଦ' ସେର ମାଛ ।

ଫକୀର ବାସ୍ତବରେ ଫକୀର । ପଇସା ତ ଯାହା କହନ୍ତି 'ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ' । ଅପ୍ରିୟମ୍ବଦା ପ୍ରଥମ ଭାର୍ଯ୍ୟାଙ୍କ ମୃତ୍ୟୁ ପରେ ସେ ପୁଣି ୨୯ ବର୍ଷ ବୟସରେ ବାର ବର୍ଷର କନ୍ୟା ଭାର୍ଯ୍ୟା କୃଷ୍ଣକୁମାରୀଙ୍କ ହାତ ଧରିଥିଲେ । ତାଙ୍କର ବି ଅକାଳବିୟୋଗ ହେଲା । ସାହେବଙ୍କ ସଙ୍ଗେ ଖାନା ଖାଇଲେ, ରଙ୍ଗମହଲରେ ଅଳସ ଭାଙ୍ଗିଲେ; କିନ୍ତୁ ଜୀବନରେ ପ୍ରକୃତ ସୁଖ ସେ ପାଇଲେ ନାହିଁ—ଅଭାବ, ଅନାଟନ, ସନ୍ଦେହ,

ଅବିଶ୍ୱାସ, ଅସ୍ୱାସ୍ଥ୍ୟ ଭୋଗି ସେ ଜୀବନ ଶେଷ କଲେ । ମଧୁସୂଦନ, ରାଧାନାଥ, ନନ୍ଦକିଶୋର ପ୍ରଭୃତି ସାହିତ୍ୟ ରଥୀମାନଙ୍କ ସଙ୍ଗେ ଦେଶର ସାହିତ୍ୟ-ସାରଥି ହେଲେ, ବୋଧହୁଏ ସର୍ବଶ୍ରେଷ୍ଠ ସାରଥି । ଫକୀରମୋହନ ମାଟିର ମଣିଷ ମାଟିର ଲେଖକ । ଫକୀରମୋହନଙ୍କ ହସ ଏ ଜାତି ଭୁଲିପାରେ ନା, ତାଙ୍କ ସରଳ ଲେଖାରୁ ସରଳତାର ଲେଖା ଏ ପର୍ଯ୍ୟନ୍ତ କେହି ଲେଖି ନାହିଁ । ଓଡ଼ିଆ ଭାଷା ଓ ସାହିତ୍ୟକୁ ଅଧିକ ବିପଦରୁ ଅନ୍ୟ କେହି ରକ୍ଷା କରି ନାହାନ୍ତି । ସେନାପତି ସେ, ଖଣ୍ଡାୟିତ ଘରର ପିଲା—ହାତରେ ତାଙ୍କର ଖଣ୍ଡା ନ ଥିଲା ସତ; କିନ୍ତୁ ସେଥିପାଇଁ ସଙ୍ଗରେ ସୈନ୍ୟ ନ ଥାଇ ମଧ୍ୟ ସେ ହେଲେ ଏ ଜାତିର ସେନାପତି ।

ଏ ଦୁନିଆରେ ଫକୀରମୋହନଙ୍କର ଛ’ମାଣ ନ ଥାଇପାରେ, ଆଠଗୁଣ୍ଠ ବି ନ ଥାଇ ପାରେ; ମାତ୍ର ତାଙ୍କ "ଛମାଣ ଆଠଗୁଣ୍ଠ" ସବୁଦିନେ ଥିବ । ସେ ଅମୃତ, ଅମର ।

# ରେଡ଼ିଓ ନିର୍ମାତା ମାର୍କନୀ

ରେଡ଼ିଓ ଆଜ ସବୁଠି । ବେଳସଦନପୁରଠାରୁ ଆରମ୍ଭ କରି ଜନତା ଭବନ ପର୍ଯ୍ୟନ୍ତ ଯେଉଁଠି ଦେଖିବ ରେଡ଼ିଓ । ସତେ ଯେମିତି ଘରର ମାମୁଲି କଥାଟାଏ । କିନ୍ତୁ ଟିକିଏ ଭାବିଲେ ମୁଣ୍ଡ ବୁଲାଇଯାଏ । ତାର ନାହିଁ, ଖୁଣ୍ଟ ନାହିଁ, କାହିଁ ବକିଂହାମ ପାଲେସ, କାହିଁ ବର୍ମିଂହାମ ଫ୍ୟାକ୍ଟ୍ରି, କାହିଁ ନୂଆଦିଲ୍ଲୀ, କାହିଁ ନ୍ୟୁୟର୍କ ସହର, ସେକେଣ୍ଡ ଭିତରେ ସବୁ ଯୋଡ଼ି ହୋଇଯାଏ । ରେଡ଼ିଓ ଦେହରେ ହାତ ଦେଲମାତ୍ରେ ପୃଥିବୀଯାକର କଥା କାନରେ ବାଡ଼େଇ ହୋଇଯାଏ । ନେହେରୁଙ୍କ ବାର୍ତ୍ତା ଯେଉଁ ମୁହୂର୍ତ୍ତରେ ଶୁଣାଯାଏ ନେଗିବ୍ ବାର୍ତ୍ତା ବି ସେହି ମୁହୂର୍ତ୍ତରେ ଶୁଣାଯାଏ । କିନ୍ତୁ ଏହି ବିଚିତ୍ର ରେଡ଼ିଓ ଯନ୍ତ୍ରଠାରୁ ଆହୁରି ବିସ୍ମୟକର ଘଟଣା ହେଉଛି, ଯେଉଁ ଲୋକ ଏହି ଯନ୍ତ୍ର ତିଆରି କଲେ ତାଙ୍କୁ ମାରିବାକୁ ଲୋକେ ବାହାରିଲେ । ସଂସାର-ପଥ କି ପିଚ୍ଛିଳ ସତେ !

ସେହି ବିରାଟ ବୈଜ୍ଞାନିକଙ୍କର ନାମ ହେଉଛି ମାର୍କନୀ । ମା ଆଇରିସ୍, ବାପା ଇଟାଲିଆନ, ଘର ଲଣ୍ଡନ । ମାତ୍ର ଲୋକେ ତାଙ୍କୁ ଇଟାଲିଆନ ବୋଲି ଜାଣନ୍ତି । ଅବଶ୍ୟ ବର୍ତ୍ତମାନ ନିଜ ଗୁଣ ବଳରେ ସେ କେବଳ ଲଣ୍ଡନର ନୁହଁନ୍ତି ବା ଇଟାଲିର ନୁହନ୍ତି, ବରଂ ସାରା ବିଶ୍ୱର, ସମଗ୍ର ମାନବଜାତିର । ସେ ଇଟାଲି ଲୋକ ପରି ଦେଖା ନ ଯାଇ ବରଂ ଇଂରେଜୀ ଲୋକ ପରି ଦେଖାଯାନ୍ତି । ଥରେ ମଟର ଦୁର୍ଘଟଣା ଘଟି ତାଙ୍କ ଡାହାଣ ଆଖିଟି ନଷ୍ଟ ହୋଇ ଯାଇଥିଲା । ମାତ୍ର ଗୋଟିଏ ଆଖିରେ ଦୁନିଆକୁ

ଯାହା ସେ ଦେଖାଇଲେ, ଦୁଇ ଆଖି ଥାଇ କେତେ ଜଣ ଲୋକ ତା କରି ପାରନ୍ତି !

ମାର୍କନୀ ବୁଲିବାକୁ ଖୁବ ଭଲ ପାଆନ୍ତି । ମାଆଙ୍କ ସଙ୍ଗେ ଫ୍ରାନ୍ସ ବାଟେ ଯିବାବେଳେ ବରଫାବୃତ ପାହାଡ଼, ନଦନଦୀ ସବୁ ଦେଖି ମୁକ୍ତ ଆକାଶରେ ଚଢ଼େଇ ପରି ଘୂରି ବୁଲିବାକୁ ସେ ଇଚ୍ଛୁଥିଲେ । କାନ୍ଥଘେରା ଘରେ ସେ ବସିବାକୁ ଭଲ ପାଆନ୍ତି ନାହିଁ ବୋଲି ମୋଟର ବୋଟରେ ବସି ପାଣି ଭିତରେ ତାଙ୍କ ବିଜ୍ଞାନ କାମ କରନ୍ତି । ଏକ ମୁହୂର୍ତ୍ତରେ ପୃଥିବୀର ଯେକୌଣସି ସ୍ଥାନର ବାର୍ତ୍ତା ସେ କେମିତ ଜାଣିବେ, ପୃଥିବୀର ଯେକୌଣସି ସ୍ଥାନ ଦେଖି ପାରିବେ, ସେଇ ଚେଷ୍ଟାରେ ସମସ୍ତ ସାଧନା ଲଗାଇ ଦିଅନ୍ତି । କଥାଟା ନିତାନ୍ତ ଅସମ୍ଭବ । ମାତ୍ର ମହାପୁରୁଷମାନେ ଅସମ୍ଭବ କଥାରେ ଲାଗନ୍ତି ଓ ଆମ ଅସମ୍ଭବ ତାଙ୍କର ସମ୍ଭବ ହୁଏ । ସବୁ କାମ ସେ ଉଡ଼ା ବେଗରେ କରନ୍ତି । ପାଣିକୁ ସେ ଖୁବ ଭଲ ପାଆନ୍ତି । ଆଟଲାଣ୍ଟିକ ମହାସାଗରକୁ ସେ ସତାଅଶି ଥର ପାରି ହୋଇଛନ୍ତି । ଗାଁ ନଦୀକୁ ସତାଅଶି ଥର ପାରି ନ ହେବା ଲୋକ ତ ଦୁନିଆରେ କମ୍ ନାହାନ୍ତି ?

ଅଳ୍ପ ବୟସରେ ମାର୍କନୀ ବିଦ୍ୟୁତ-ଲହରୀ ପରୀକ୍ଷା ଆରମ୍ଭ କରିଦେଲେ । ପୃଥିବୀର ମହାବିସ୍ମୟକର ରେଡ଼ିଓ ତିଆରି କଲା-ବେଳକୁ ତାଙ୍କ ବୟସ ମୋଟେ ସତାଇଶ । ସତାଇଶ ବେଳକୁ ହୁଏତ ଲୋକଙ୍କର ଜ୍ଞାନଚକ୍ଷୁ ଫିଟି ନ ଥାଏ । ପ୍ରଥମେ ପ୍ରଥମେ ସେ ଗୋଟିଏ ଘରୁ ଆଉ ଗୋଟିଏ ଘର ଭିତରେ ଟେଲିଗ୍ରାଫ ବାର୍ତ୍ତା ଶୁଣିଥିଲେ । ତା ପରେ ମାଇଲିଏ, ଦୁଇ ମାଇଲ ଦୂରରୁ ଶୁଣିଲେ । ବାପା ତାଙ୍କର ଏସବୁ ବାତୁଳତା ଦେଖି ରାଗିଯାନ୍ତି । ମାତ୍ର

ମାର୍କନୀ ଯେତେବେଳେ ପଚସ୍ତରୀ ହଜାର ଟଙ୍କାରେ ତାଙ୍କର କେତେକ ଆବିଷ୍କାର ବ୍ରିଟିଶ ସରକାରଙ୍କୁ ବିକ୍ରୀ କଲେ, ସେତେ-ବେଳେ ତାଙ୍କ ବାପାଙ୍କର ଚେତା ଆସିଲା । ବାଳକର ବାଲ୍ୟକାଳର ମୂଲ୍ୟ ପଚସ୍ତରୀ ହଜାର ଟଙ୍କା ! ଟଙ୍କା ପାଇ ମାର୍କନୀ ଏତେ ଟିକେ ବି ଖୁସି ହୋଇ ନ ଥିଲେ । କେବଳ ସଙ୍ଗେ ସଙ୍ଗେ ଦୋକାନକୁ ଯାଇ ଗୋଟାଏ ସାଇକେଲ କିଣି ପୁଣି କାମ ଉପରକୁ ଗଲେ । ଟଙ୍କା ଯା ପଛରେ ଗୋଡ଼ାଇ ଯାଏ, ସେ ଟଙ୍କାକୁ ଆଡ଼ନୟନରେ ଚାହାନ୍ତା କାହିଁକି ?

୧୯୦୨ ମସିହା ଏକ ନୂତନ ଶତାବ୍ଦୀର ଆରମ୍ଭ ନୁହେଁ, ଏକ ନୂତନ ଯୁଗର ଆରମ୍ଭ । ଏହି ଯୁଗର ସ୍ରଷ୍ଟା ହେଉଛନ୍ତି ମାର୍କନୀ । ସେ ଦେଖିଲେ ଯେ ତାଙ୍କର ବହୁ ଦିନର ସ୍ୱପ୍ନ ସଫଳ ହେଲା ପରି ଜଣାପଡ଼ୁଛି । ତେଣୁ ଇଂଲଣ୍ଡର କର୍ଣ୍ଣୱାଲରେ ଲୋକ ରଖାଇ ଦେଇ ସେ ନିଉଫାଉଣ୍ଡଲାଣ୍ଡ ଚାଲିଗଲେ । ସେଇଠି ସେ ବେତାରବାର୍ତ୍ତା ପାଇବା ପାଇଁ ଅପେକ୍ଷା କରି ରହିଲେ । ଯନ୍ତ୍ରପାତି ସବୁ ପ୍ରସ୍ତୁତ କରି ରଖିଲେ । ଇଂଲଣ୍ଡରୁ ବାର୍ତ୍ତା ପଠା ହେବ, ସେ ଶୁଣିବେ । ମାତ୍ର କାହିଁ, ଘଣ୍ଟା ଘଣ୍ଟା ଅପେକ୍ଷା କଲେ, କିଛି ଫଳ ନାହିଁ । ସତରେ ବା କଣ ଫଳନ୍ତା ? ପବନକୁ ଦୁନିଆରେ କିଏ ଫାସ ପାଶ-ବାନ୍ଧି ରଖିଛି ? ଅସମ୍ଭବ ?

ମାତ୍ର ମାର୍କନୀ କହିଲେ; ଅସମ୍ଭବ କିଛି ନାହିଁ, ବହୁ ଦିନରୁ ନେପୋଲିଅନ ଅସମ୍ଭବ ଶବ୍ଦକୁ ଭାଷାକୋଷରୁ ଉଠାଇ ଦେଇଛନ୍ତି । ମନୁଷ୍ୟ ପକ୍ଷରେ, ବିଶେଷତଃ ବିଂଶ ଶତାବ୍ଦୀ ମଣିଷ ପକ୍ଷରେ ସବୁ ସମ୍ଭବ । ବାର୍ତ୍ତା ଆସିଲା, ପ୍ରଥମେ କ୍ଷୀଣ ଅସ୍ପଷ୍ଟ ଶବ୍ଦ ଶୁଣାଗଲା । କାଳକ୍ରମେ ସ୍ପଷ୍ଟତର ହୋଇ ଉଠିଲା । ବିକାଶ

ମାର୍କନୀଙ୍କର ହୃଦୟ୍ରୁ ବାଦ୍ୟତରଙ୍ଗ ସଙ୍ଗତ ତାଳ ଦେଇ ନାଚିଗଲା; କି ଅଶ୍ରୁତପୂର୍ବ ଅସମ୍ଭବ କଥା ଘଟିଲା । କେଉଁ ପୁରାଣ ଯୁଗରେ ଲୋକେ ପାତାଳପୁରରେ ବାର୍ତ୍ତା ଶୁଣିପାରୁଥିଲେ ସିନା; ମାତ୍ର କଳିକାଳରେ ଲୋକେ ଏହା ବିଶ୍ୱାସ କରି ନ ଥିଲେ । ଆନନ୍ଦରେ ମାର୍କନୀ କିଛି କାଳ କଥା କହି ପାରିଲେ ନାହିଁ । ଅନ୍ତର ତାଙ୍କର ବାର୍ତ୍ତା ସ୍ପନ୍ଦନରେ ନିସ୍ପନ୍ଦ ହୋଇଗଲା । ଚବିଶ ଘଣ୍ଟା ପର୍ଯ୍ୟନ୍ତ ସେ ସମ୍ବାଦ କାହାକୁ କହିଲେ ନାହିଁ । ମାତ୍ର ସତ୍ୟ-ସୂର୍ଯ୍ୟକୁ କାହିଁ ତଳେ ଲୁଚାଇ ପାରନ୍ତା କିଏ ? ମନୁଷ୍ୟ ଜାତିର ଏହି ଅସମ୍ଭବ ଆବିଷ୍କାର ବିଜୁଳି ବେଗରେ ସବୁ କାଗଜରେ ଜଳି ଉଠିଲା । ସ୍ଥାନକାଳର ବ୍ୟବଧାନ ଲୋପ ହେଲା ।

ମାର୍କନୀଙ୍କୁ ଲୋକେ ପଚାରିଲେ, 'ଟେଲିଭିଜନ' କେବେ ଏ ଦୁନିଆରେ ସମ୍ଭବ ହେବ ? ମାର୍କନୀ କହିଲେ, 'ଦଶବର୍ଷ କିମ୍ବା ତା ପୂର୍ବରୁ' । ତାହା ହିଁ ସତ୍ୟ ହେଲା ।

# ବିଶ୍ୱକବି କବୀନ୍ଦ୍ର ରବୀନ୍ଦ୍ର

ଯେଉଁ ଦୁନିଆଁରେ ଆଜି ଶିକ୍ଷା ନାହିଁ ବା ଶାନ୍ତି ନାହିଁ, ସେ ଦୁନିଆରେ ଶ୍ରୀନିକେତନ ଓ ଶାନ୍ତିନିକେତନ ଧୀରେ ସୃଷ୍ଟି ଚାଲିଛି । ଚୀନ, ଜାପାନ, ଆଫ୍ରିକା, ଆମେରିକା ସବୁ ଦେଶର ଲୋକ ସେଠି ଏକତ୍ର ବସି ବିଶ୍ୱଶାନ୍ତିର ସ୍ୱପ୍ନ ଦେଖୁଛନ୍ତି—କାବ୍ୟ, କଳା, ସଙ୍ଗୀତ ଓ ସାହିତ୍ୟକୁ ଆପେଇ ନେଉଛନ୍ତି । ଶାନ୍ତ ଆଶ୍ରମର କ୍ଲାନ୍ତ କୋମଳ ବାୟୁମଣ୍ଡଳରେ ବିଚିତ୍ର ଜୀବନଧାରା ଛୁଟି ଚାଲିଛି । ଶାନ୍ତିନିକେତନର ସଙ୍ଗୀତ ପ୍ରାର୍ଥନାରେ ଥରେ ଯିଏ କେହି ଯୋଗ ଦେଇଥାନ୍ତି, ତେବେ ତପୋବନର ନୀରବ ମହିମା ସେ ନିଶ୍ଚୟ ଉପଭୋଗ କରିଥିବେ । ଏହି ଶାନ୍ତିନିକେତନ ବିରାଟ ମନର ବିରାଟ କଳ୍ପନା । ଦ୍ରଷ୍ଟାର ଦର୍ଶନ ଓ କବିର ମନ ସଂଯୋଗରେ ଏହାର ଜନ୍ମ । ସେହି କବି ରବୀନ୍ଦ୍ରନାଥ ଆଜି ନାହାନ୍ତି; କିନ୍ତୁ ରବି କିରଣରେ ପଦ୍ମ ପରି ଶାନ୍ତିନିକେତନ ଆଜି ଫୁଟି ଉଠୁଛି ।

୧୯୧୩ ମସିହାରେ ଯେଉଁ ରବୀନ୍ଦ୍ର ବିଶ୍ୱସମ୍ମାନର ମୁକୁଟ ପିନ୍ଧିଲେ, କବିତା ପାଇଁ ନୋବେଲ ପୁରସ୍କାର ପାଇଲେ, ତାଙ୍କର ପିଲାଦିନ କଥା ଓ କବିତା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । କବି ଯେତେବେଳେ କଲିକତାରେ ଯୋଡ଼ାଶଙ୍କୋର ଶିଶୁ, ତାଙ୍କର ସେକାଳ କବିତାର ଅନୁବାଦ ପଦେ ଅଧେ ଶୁଣନ୍ତୁ—

'ଛୋଟପିଲାଟି ମନେ କି ପଡ଼େ ଆରେ ପୁରୁଣା ବଟ
ଦିନ ରାତି ଛିଡ଼ା ହୋଇଛୁ ମଥାରେ ବାନ୍ଧି ଜଟ ।'

ଶିଶୁମାନେ ତ ସ୍ୱଭାବ ଚଞ୍ଚଳ ! ଶିଶୁ ମନ ମୁକ୍ତ ମନ, ସୁନାର ପିଞ୍ଜରାରେ ସେ ତ ଆବଦ୍ଧ ରହିପାରେ ନା । ଯୋଡ଼ାଶାଙ୍କୋର କୋଠାମହଲ ଓ ପ୍ରାଙ୍ଗଣପାଚେରୀ ଘେରି ସବୁବେଳେ ପଦାକୁ ପଳାଇବାକୁ ତାଙ୍କ ମନ । ମହର୍ଷି ଦେବେନ୍ଦ୍ରନାଥଙ୍କ ପୁଅ ରବୀନ୍ଦ୍ର ସୁଖସମ୍ଭୋଗ, ଦାସଦାସୀର ଅଭାବ ନାହିଁ । କିନ୍ତୁ ଘର ଭିତରର ସୁଖସମ୍ଭୋଗ ଯେତେ ତାଙ୍କ ଆଖିରେ ନ ପଡ଼େ, ତାଠୁ ବେଶି ପଡ଼େ ମୁକ୍ତ ଆକାଶର ନୀଳିମା; ଖୋଲା ବଗିଚାର ଫୁଲ; ବରଗଛର ଓହଳ । ଦୁନିଆରେ ଯେ ବଡ଼ ହୁଏ, ସାନ କଥାରୁ ବୋଧହୁଏ ତାର ଆରମ୍ଭ ।

ପିଲାଦିନେ ରବୀନ୍ଦ୍ର ପୁରପୁରୁ ଗୃହଚାକରଙ୍କ ହାତରେ ଥିଲେ । କାଳେ ରବି ଦୁଆରେ ବୁଲିଯାଇ ଦୁଷ୍ଟାମି କରିବେ ବୋଲି ଚାକରମାନେ ଓଡ଼ିକୋଠାଲିରେ ○ କାଟି ତାଙ୍କୁ ବସାଇ ଦେଉଥିଲେ । ଯେଉଁ ରବି ଦିନେ ସାରା ପୃଥିବୀକୁ ବାରମ୍ବାର ବୁଲିଥିଲେ, ବନ୍ଦେ ଅନନ୍ତକୁ ବାରିତଳ ବାଟରେ ପରିଣତ କରିଥିଲେ, ସେ ପୁଣି ଖଡ଼ି ଗାର ଠା'ରୁ ବାହାରି ପାରୁନଥିଲେ ! ରବୀନ୍ଦ୍ର ପାଠ ପଢ଼ି ଡିଗ୍ରୀ ପାଇନାହାନ୍ତି; ମାତ୍ର ବହୁ ଲୋକଙ୍କ ଡିଗ୍ରୀ ପାଇଁ ବାଟ କରିଦେଇ ଯାଇଛନ୍ତି । ପିଲାମାନେ ଯେତେବେଳେ ତାଙ୍କ ଭାଇମାନେ ସ୍କୁଲକୁ ଯାଉଥିଲେ, ରବି ସେତେବେଳେ ସ୍କୁଲକୁ ଯିବା ପାଇଁ କାନ୍ଦୁଥିଲେ । କିନ୍ତୁ ସେତେବେଳେ ଲୋକେ କହୁଥିଲେ, "ରବି ତୁମେ ସିନା ଆଜି ସ୍କୁଲକୁ ଯିବାପାଇଁ କାନ୍ଦୁଛ, ଦିନେ ଆସିବ, ଯେତେବେଳେ ସ୍କୁଲ ନ ଯିବା ପାଇଁ ତୁମେ କାନ୍ଦିବ ।" ପ୍ରକୃତରେ କଥାଟା ବି ନିଘଟ ସତ । ଅଳ୍ପ ବୟସରେ ସବୁ ପିଲାଙ୍କ ଜୀବନରେ ତ ଏମିତି ଘଟିଥାଏ ।

ସାଗରଜଳକୁ ମାଠିଆ ଭିତରେ କିମ୍ବା ଉଦ୍ଧକରଣକୁ ଘର କାନ୍ଥ ଭିତରେ ବାନ୍ଧି ରଖିହେବା କିଏ ? ସେଥିପାଇଁ ରବୀନ୍ଦ୍ର କେବେ ସ୍କୁଲ ଘରର କାନ୍ଥ ଭିତରେ ବସି ରହିପାରିଲେ ନାହିଁ । ଠିକ୍ ଇଂରେଜୀ କବି ଶେଲିଙ୍କ ପରି । ଝଡ଼ବାବାଟେ କଳା ବାଦଲର ଆକାଶ ଖେଳ ଦେଖି ଶେଲି ପାଗଳ ହୁଅନ୍ତି, ବାତାୟନ ଡେଇଁ ବାହାର ଦୁନିଆରେ ଘୂରି ବୁଲନ୍ତି । ରବୀନ୍ଦ୍ରଙ୍କର ଅବସ୍ଥା ଠିକ୍ ସେହିପରି । ସ୍କୁଲଘରେ ବସିବା ତାଙ୍କ ପକ୍ଷରେ ଅସହ୍ୟ ହେଲା । ତେଣୁ ସ୍କୁଲ ପାଠ ଶେଷ କରିବା ତାଙ୍କ ପକ୍ଷରେ ସମ୍ଭବ ହେଲାନ । ମାତ୍ର ସବୁଦିନ ସନ୍ଧ୍ୟାରେ ଟିଉସନ ମାଷ୍ଟର ଆସି ପହଞ୍ଚନ୍ତି । ରବୀନ୍ଦ୍ର ବହୁ ଚେଷ୍ଟା କରନ୍ତି ତାଙ୍କଠୁ ରକ୍ଷା ପାଇବା ପାଇଁ; କିନ୍ତୁ ପାରନ୍ତି ନାହିଁ । ଜର ହେଲେ ଛୁଟି ପାଇବା ପାଇଁ କେତେଥର ସେ ପାଣିରେ ବୁଡ଼ି ନାହାନ୍ତି, କାକରରେ ସଡ଼ି ନାହାନ୍ତି; କିନ୍ତୁ କେବେହେଲେ ସ୍ୱାସ୍ଥ୍ୟ ତାଙ୍କର ଅନୁକୂଳ ହୋଇ ନାହିଁ, ଟିଉସନ୍ ମାଷ୍ଟର ହାତରୁ ସେ ରକ୍ଷା ପାଇପାରି ନାହାନ୍ତି ।

ପନ୍ଥଲେ ୧୭ ବର୍ଷ ବୟସରେ ୧୮୭୮ ମସିହାରେ ସେ ବିଲାତ ଗଲେ । ଇଂରେଜୀ ବହି, ଇଂରେଜୀ କବିତା ଚର୍ଚ୍ଚା କରି ଅଳ୍ପ ସମୟ ପରେ ଫେରି ଆସିଲେ । ୧୮୮୩ ମସିହାରେ ରବି ଜୀବନରେ ମୃଣାଳିନୀଙ୍କର ଆବିର୍ଭାବ ହେଲା । ସ୍ତ୍ରୀ ମୃଣାଳିନୀଙ୍କ ସାଙ୍ଗରେ ବଙ୍ଗଳା ମାଟିରେ ପନ୍ଦର ବରଷକାଳ କବି ଜୀବନ ଲେଟାଇ ଦେଇଥିଲେ । ବଙ୍ଗଳା ମାଟି, ବଙ୍ଗଳା ମଣିଷ, ବଙ୍ଗ ଆକାଶ, ବଙ୍ଗ ପାଣିପବନ ସବୁ ତାଙ୍କର ପ୍ରିୟ; ପ୍ରିୟ ତ ତାଙ୍କର କଲମମୂନରେ ମାଟିର ବଙ୍ଗଳା ସୁନାର ବଙ୍ଗଳା ହୋଇ ଉଠିଲା ।

ପ୍ରତ୍ୟେକ ବଙ୍ଗବାସୀର କାହିଁକି ପ୍ରତ୍ୟେକ ଭାରତୀୟର ଆଖି ଫେରିଲା ବଙ୍ଗଳାର ସୁନାମାଟି ଉପରକୁ । ମହା ମହା ଲୋକେ ଯାହା କରି ପାରି ନ ଥାନ୍ତେ, ଜଣେ କବିଙ୍କ କଲମରେ ତାହା ଏତେ ସହଜରେ ହୋଇ ପାରିଲା । କାଳକ୍ରମେ ଜାତୀୟ ଭାବରୁ ଉଠି ମହାଭାରତୀୟ ତଥା ମହାମାନବୀୟ ପ୍ରେମମନ୍ତ୍ର ସେ ପ୍ରଚ୍ଚାର କଲେ । ଆଜି ଯେଉଁ ସଙ୍ଗୀତ 'ଜନଗଣ ମନ ଅଧିନାୟକ············ଶୁଣିଲେ ଆକୁମାରୀ ହିମାଳୟ କମ୍ପି ଉଠେ; ସେହି ସଙ୍ଗୀତ ତାଙ୍କର ବୀଣାରୁ ହିଁ ନିସୃତ ହୋଇଥିଲା ।

କବି ଜୀବନରେ ପ୍ରଥମ ବଜ୍ରପାତ ହେଲା ୧୯୦୨ ରେ । କବିପ୍ରିୟା ମୃଣାଳିନୀ ରବି ଆଉଁ ଥାଉଁ ମୃତ ହୋଇଗଲେ । ଖାଲି ସେତିକି ନୁହେଁ, ବର୍ଷ ପରେ ବର୍ଷ ମୃତ୍ୟୁର ସୁଅ ଛୁଟିଲା । ୧୯୦୩ରେ ଝିଅ, ୧୯୦୪ରେ ପ୍ରିୟବନ୍ଧୁ, ୧୯୦୫ରେ ପୂଜ୍ୟ ପିତା, ୧୯୦୭ରେ ପ୍ରିୟତମ ପୁତ୍ର—ଜଣକ ପଛରେ ଜଣେ ଚାଲିଗଲେ । ଶିରୀଷ ଫୁଲରେ ବଜ୍ର ପଡ଼ିଲା, କବିହୃଦୟ ଭାଙ୍ଗି ପଡ଼ିଲା ।

୧୯୧୧ରେ କବି ପୁଣି ବିଲାତ ଗଲେ । ଅନ୍ୟ ଥରଠାରୁ ଏଥର ବିଲାତ ଆସିବା ସ୍ୱତନ୍ତ୍ର । ଏଥର ଅନେକ ସାହେବୀ ବନ୍ଧୁଙ୍କ ସଙ୍ଗେ ଦେଖା ହେଲା । କବିଙ୍କର ଗୀତାଞ୍ଜଳି କବିତା ସମସ୍ତେ ପଢ଼ିଲେ । ସାହେବ ପିଲାଙ୍କ ଆଖି ଖୋସି ହୋଇଗଲା । ସମସ୍ତେ ମୁହଁକୁ ମୁହଁ ଅନାଅନି ହୋଇ ଚୁପ୍ ରହିଲେ । ଇଂରାଜୀ କବିତା ଏତେ ଉନ୍ନତ ହୋଇପାରେ, କେହି ବିଶ୍ୱାସ କରିପାରିଲେ ନାହିଁ । କିନ୍ତୁ ଅଳ୍ପ ଦିନ ଭିତରେ ୧୯୧୩ର ଇଂରାଜୀ କବିରାଜ ହୋଇ ଉଠିଲେ । ବିଶ୍ୱସମ୍ମାନର ମୁକୁଟ ତାଙ୍କ ମଥାରେ ଦିଆଗଲା । ଲକ୍ଷେ ଟଙ୍କାର ନୋବେଲ ପୁରସ୍କାର ତାଙ୍କୁ ମିଳିଲା । ସେ ହେଲେ

ବିଶ୍ୱକବି । ତାପରେ କବି ପଶ୍ଚିମରୁ ପଶ୍ଚିମକୁ ଘୂଞ୍ଚିଲେ । ଆମେରିକାର ସର୍ବଶ୍ରେଷ୍ଠ ଜ୍ଞାନକେନ୍ଦ୍ର ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟରେ ଭାଷଣ ଦେଇ ଆମେରିକା ଜନତାଙ୍କୁ ମୁଗ୍ଧ କଲେ । ହାଇସ୍କୁଲ ଶିକ୍ଷା ଶେଷ କରିବା ପାଇଁ ଯାହାଙ୍କର ଧୈର୍ଯ୍ୟ ନ ଥିଲା, ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟରେ ଭାଷଣ ଦେବାର ନିମନ୍ତ୍ରଣ ତାଙ୍କୁ ହିଁ ମିଳିଥିଲା, ପୁଣି ସେ କାଳରେ, ଯେତେବେଳେ ଲୋକେ ଆମେରିକା ନାଁ ଶୁଣିବାକୁ ପାଉ ନ ଥିଲେ ।

ନୂତନ ଶତାବ୍ଦୀରେ କବି ନୂତନ ତନ୍ତ୍ରର ବାଟ ଫିଟାଇଲେ । ୧୯୦୧ ରେ ସେ ଶାନ୍ତିନିକେତନ ଆରମ୍ଭ କଲେ । ତାଙ୍କର ଧାରଣା ଥିଲା, ଶାନ୍ତିନିକେତନ ହେବ ବିଶ୍ୱଶାନ୍ତିର ଏକମାତ୍ର ଉତ୍ସ । ଶାନ୍ତି-ନିକେତନକୁ ବଞ୍ଚାଇବା ପାଇଁ କବି ଭାରତ ସାରା ଭିକ୍ଷା ମାଗି ବୁଲିଲେ । ମହାତ୍ମା ଗାନ୍ଧି ଜଣେ ବନ୍ଧୁଙ୍କଠାରୁ ଏକକାଳୀନ ଷାଠିଏ ହଜାର ଟଙ୍କା ଯୋଗାଡ଼ କରାଇ ଦେଇଥିଲେ । ଏହା ହେଲା ମହାଭିକ୍ଷୁକଙ୍କୁ ମହାମାନବଙ୍କର ମହା ଦାନ । ଦୀନବନ୍ଧୁ ଆଣ୍ଡ୍ରୁଜ, ପିଅରସନ୍, ଗାନ୍ଧି ପ୍ରଭୃତି ମହାତ୍ମାମାନେ ଶାନ୍ତିନିକେତନରେ ଅନେକ କାଳ କଟାଇଥିଲେ । ଫଳତଃ ଶାନ୍ତିନିକେତନ ଦୁନିଆର ଦୃଷ୍ଟି ଆକର୍ଷଣ କରି ପାରିଥିଲା ।

କବି ଆଜି ନାହାନ୍ତି; କିନ୍ତୁ କବିକୀର୍ତ୍ତି ଶାନ୍ତିନିକେତନ କାଳକ୍ରମେ ମହାସ୍ଥାନ ହୋଇ ଉଠୁଛି । ମହାଭାରତୀୟ ଅନୁଷ୍ଠାନଟି ବିଶ୍ୱକଳାକେନ୍ଦ୍ରରେ ପରିଣତ ହୋଇଛି । ଯେତେଦିନ କାବ୍ୟକଳା-କବିତାର ଆଦର ଅଛି, ସେତେଦିନ ରବୀନ୍ଦ୍ର ଅମର ।

———

# ଟେଲିଫୋନ ଜନ୍ମଦାତା ଆଲେକ୍‌ଜାଣ୍ଡାର ବେଲ୍

"ଆଜ୍ଞା, କିଏ କହୁଛନ୍ତି ?"

"ମୁଁ, ଆଜ୍ଞା ବେହୁରା କହୁଛି, କୃଷି ଅଫିସରୁ ।" ଏଇ ହେଲା ଟେଲିଫୋନ କଥା । କଥା କହିବା ଓ କଥା ଶୁଣିବା ଲୋକ ଓଡ଼ିଶା ଭିତରେ ଜଣେ, କଟକରେ ଜଣେ, ସମ୍ବଲପୁରରେ ଜଣେ ଥାଇ ପାରନ୍ତି, ଭାରତର ଦିଲ୍ଲୀ ବା ଦାକ୍ଷିଣାତ୍ୟରେ ଥାଇ ପାରନ୍ତି କିମ୍ବା ଭାରତ ବାହାରେ ଲଙ୍କା ବା ଲଣ୍ଡନରେ ଥାଇପାରନ୍ତି । ଯେତେ ଦୂର ହେଲେ କିଛି ଯାଏ ଆସେ ନାହିଁ, ଖାଲି ତାର ଲାଗିଥିଲେ ହେଲା । ମଣିଷ ଏ ଘରୁ କହିଲେ ସେ ଘରକୁ ଶୁଭୁ ନାହିଁ; ଅଥଚ ହଜାର ହଜାର ମାଇଲ ଦୂରରୁ ଡାଙ୍ଗରେ ପାଣି ପବନ ପର୍ବତ ସବୁ ଡେଇଁ କଥା ଆସି କାନରେ ବାଜୁଛି । ସତେ ଯେମିତି କିଏ କାନରେ କହୁଛି । ଅଦ୍ଭୁତ ମଣିଷର କଣ୍ଠ । ଘରକୁ ଘର, ଦେଶକୁ ଦେଶ କଥାବାର୍ତ୍ତା କରିବା ପାଇଁ ପୃଥିବୀରେ ବର୍ତ୍ତମାନ ସାତକୋଟିରୁ କମ୍ ଟେଲିଫୋନ ଯନ୍ତ୍ର ନାହିଁ ।

ଯେଉଁ ବରିଷ୍ଠ ବୈଜ୍ଞାନିକ ଏହି ପୃଥିବୀଟାକୁ ଏତେ ଛୋଟ କରିଦେଲେ, ସମସ୍ତ ମଣିଷ ଜାତିକୁ ଯେ ତାଙ୍କ ବାଟରେ ଛନ୍ଦି-ଦେଲେ; ସେ ସ୍କଟଲଣ୍ଡର ଜଣେ ଗରିବ ଲୋକ । ପିଲାଦିନେ ତାଙ୍କ ଘର ଆଗରେ କଣ ଲେଖା, ଦେଖନ୍ତୁ—

## ଅପୂର୍ବ ସୁଯୋଗ ଛାଡ଼ନ୍ତୁ ନାହିଁ

୧ । ବିଦେଶୀ ଭାଷା ଶିଖିବା ପାଇଁ ଘଣ୍ଟାକୁ ଦଶଅଣା ।
୨ । ଫୋନେଟିକସ୍ ପଢ଼ିବା ପାଇଁ ଘଣ୍ଟାକୁ ଦଶଅଣା ।
୩ । ଖନା ଲୋକର ଖନା ଭାଙ୍ଗିବା ଘଣ୍ଟାକୁ ଦ ଟଙ୍କା ।
୪ । କାଲକୁ ପାଠ ପଢ଼ାଇ ଦେବା ଘଣ୍ଟାକୁ ଏକଟଙ୍କା ।

ଆସନ୍ତୁ ପରୀକ୍ଷା କରନ୍ତୁ ।

ଜଣେ ଗରିବ ଲୋକର ଘରେ ଏହିପରି ଲିଖିତ ଗୋଟିଏ ମଇଳା ପଟା ଝୁଲୁଥିଲା । ସେହିଘରେ ରହୁଥିଲେ ଆଲେକ୍‌ଜାଣ୍ଡର ବେଲ୍ । କିନ୍ତୁ ଆପଣ ବେଲ୍‌ଙ୍କ ଅନୁଷ୍ଠାନ ଦେଖିଛନ୍ତି ? ଯଦି କେବେ ଆମେରିକା ଯାନ୍ତି, ତେବେ ନିଶ୍ଚୟ ଖୋଜି ଦେଖିବେ 'ବେଲ୍ ଟେଲିଫୋନ ଲାବୋରେଟୋରି ।' ଏ ପ୍ରକାଣ୍ଡ କାରଖାନା । ପିଲାଦିନେ ବେଲ ସ୍କଟଲଣ୍ଡରେ ତାଙ୍କ ବାପାଙ୍କ ସାଙ୍ଗରେ ରହି ଖନା ଏବଂ କାଲମାନଙ୍କୁ ଫୋନେଟିକ୍ (ଉଚ୍ଚାରଣ ଅଭ୍ୟାସ ଦ୍ୱାରା) ପ୍ରଣାଳୀରେ ଶିକ୍ଷା ଦେଉଥିଲେ । ଖନାମାନଙ୍କୁ ଦେଉଥିଲେ ଜଭ, କାଲମାନଙ୍କୁ ଦେଉଥିଲେ କାନ । ମାତ୍ର କିଏ ଜାଣିଥିଲା ଏହି ଦରିଦ୍ର ବେଲ ପୃଥିବୀଯାକକୁ କାନ ଯୋଗାଇଦେବେ ? ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡରକୁ ଇତିହାସ ଭୁଲିଯାଇପାରେ; ମାତ୍ର ସ୍କଟଲଣ୍ଡରେ ବେଲକୁ ଭୁଲିବ କିଏ ?

ବେଲ ତାଙ୍କ ବାପାଙ୍କ ସଙ୍ଗରେ ସ୍କଟଲଣ୍ଡରେ ରହି ଲୋକଙ୍କୁ ଶିକ୍ଷା ଦେଉଥିଲେ । ମାତ୍ର ତାଙ୍କ ଦେହ ଅସୁସ୍ଥ ହେବାରୁ ତାଙ୍କ

ବାପା ତାଙ୍କୁ ଆମେରିକା ପଠାଇ ଦେଲେ । ଯେଉଁ ଦେଶର ମାଟି ଖୋଳିଦେଲେ ମାଣିକ୍ୟ ବାହାରେ, ପାଣି ଆଡ଼େଇଦେଲେ ପେଟ୍ରୋଲ ବାହାରେ, ସେଇଠି ଆଲେକ୍‌ଜାଣ୍ଡାର ବେଲଙ୍କ ପ୍ରତିଭା ଫୁଟି ଉଠିଲା ।

୧୮୭୬ ମାର୍ଚ୍ଚ । ସେହି ମାସରେ ଦିନେ ବେଲଙ୍କର ବେଲ ବାଜି ଉଠିଲା । ତାଙ୍କ ସହକର୍ମୀ ଓ୍ୱାଟସନ୍ କୋଠା ଉପରୁ ତଳକୁ ଦଉଡ଼ି ଆସି ପାଟିକଲେ, ମୁଁ ଆପଣଙ୍କ କଣ୍ଠସ୍ୱର ଶୁଣିପାରିଲି, କେବଳ ବେଲ ଶୁଣିଲେ ନାହିଁ, ବଶ୍ୟ ଶୁଣିଲା । ପୃଥିବୀ ଇତିହାସରେ ନୂତନ ଯୁଗର ଆରମ୍ଭ ହେଲା; ଟେଲିଫୋନ ଯନ୍ତ୍ରର ଆରମ୍ଭ ହେଲା । ଆଜି ଟେଲିଫୋନ ନ ଥିଲେ ମଣିଷର ଧାଁଧଉଡ଼ରେ କେତେ ଶକ୍ତି ବୃଥା ନଷ୍ଟ ହେଉଥାନ୍ତା, ସଭ୍ୟ ଦେଶମାନଙ୍କରେ ପ୍ରତି ବଖରାରେ ଟେଲିଫୋନ ଥାଏ ବୋଲି ତାଙ୍କ କାମ ଏତେ ଚଞ୍ଚଳ ହୋଇପାରେ ।

ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡାର ବିଜୟ-ମୁକୁଟ ପିନ୍ଧି ମଧ୍ୟ ଫେରନ୍ତା ରାସ୍ତାରେ ଘଡ଼ି ମଲେ, କେହି ତାଙ୍କ ପାଇଁ ଅଶ୍ରୁ ଢାଳି ନାହିଁ; କେହି ହାତ ଉଠାଇ ନାହିଁ । ମାତ୍ର ସ୍କଟଲାଣ୍ଡର ବରିବ୍ର ବେଲ ଯେତେବେଳେ ମଲେ, ସେତେବେଳେ ଆମେରିକା ଓ କାନାଡ଼ାର ସମସ୍ତ ଟେଲିଫୋନ ମିନିଟିଏ ପାଇଁ ନୀରବ ରହିଲା । ଏକ କୋଟି ସତୁରି ଲକ୍ଷ ଟେଲିଫୋନ ଏକାବେଳକେ ମିନିଟିଏ ପାଇଁ ଏ ଦୁନିଆରେ କାହା ପାଇଁ ହେଲେ ବନ୍ଦ ହେବାର ଶୁଣା ନାହିଁ । ୧୯୨୨ ମସିହାରେ ଥରେ ମାତ୍ର ଘଟିଛି ବେଲଙ୍କୁ ବିଶେଷ ସମ୍ମାନ ଦେବା ପାଇଁ । ଏ ଗୌରବ ପୃଥିବୀର ଆଉ କାହାର ନାହିଁ ।

ଲଣ୍ଡନରେ ବାର୍ଣ୍ଣାର୍ଡ଼ ଶ’ ବି ଏବେ ବେଲଙ୍କ ଟେଲିଫୋନ ଯନ୍ତ୍ର ପ୍ରସ୍ତୁତ କରି ପଇସା ପାଉଥିଲେ । ବିଶ୍ୱଲେଖକ ବାର୍ଣ୍ଣାର୍ଡ଼ ଶ’ ଲୋକଙ୍କର ମଜୁରିଆ ହୋଇ କାମ କରିଥିଲେ । ବେଲ ବର୍ଣ୍ଣାର୍ଡ଼ ଶ’ ସମସ୍ତେ ମାଟିର ମଣିଷ । ଲକ୍ଷ୍ମୀଙ୍କ ନିଗ୍ରହ ସେମାନଙ୍କ ପାଇଁ ପ୍ରଥମ ଅନୁଗ୍ରହରେ ପରିଣତ ହୋଇଛି ।

ବେଲ ଆଜ ଗୋଟିଏ ବଡ଼ ଜିନିଷରେ ହାତ ଦେଇଥିବେ । ତାହା ଏବେ ପରୀକ୍ଷାରେ ସଫଳ ହେବାକୁ ଯାଉଛି । ତାକୁ କହନ୍ତି ‘ଭିଜବ୍ଲ ସ୍ପିଚ’ ବା ‘ସଚିତ୍ର କଥା ।’ ମାନେ, କଥା କହୁ କହୁ କଥା ଚିତ୍ର ଆକାରରେ ଆଙ୍କି ହୋଇଯିବ । କାଲ ଲୋକେ ଶୁଣି ନ ପାରିଲେ ବି ଚିତ୍ର ଦେଖି ବୁଝିପାରିବେ । ଯାହା କହନ୍ତି କାଲ ଠାଉ କାଲ ମା ଜାଣେ । ଏବେ ଯେକୌଣସି କାଲ ଲୋକ ଅନ୍ୟ କାଲକୁ ଟେଲିଫୋନ କରିପାରିବ । ଜଣେ ଯାହା କହିବ ଅନ୍ୟ ଜଣେ ତା ଚିତ୍ର ଆକାରରେ ଦେଖିପାରିବ । କାନ ନ ଥାଇ କଥା ଶୁଣିବ । କାଲ ଯଦି କାନ ପାଏ, ଅନ୍ଧ ଆଖି ପାଇବାକୁ ଆଉ କେତେ ଦିନ ବାକି ଅଛି ?

ବେଲ ଗୋଟିଏ କଥା କହୁଛନ୍ତି; ଯାହା ଅତି ସାମାନ୍ୟ ଅଥଚ ଅତି ମହତ—ସବୁ ଲୋକେ ଯେଉଁ ବାଟରେ ଯାଉଛନ୍ତି, ମେଣ୍ଢାଙ୍କ ପରି ଗୋଟାଙ୍କ ପଛରେ ଗୋଟାଏ ସମସ୍ତେ ସେହି ବାଟରେ ସବୁବେଳେ ଚାଲିବା ଉଚିତ ନୁହେଁ । ବାଟରୁ କାହାରି ମଝିରେ ମଝିରେ ବଣରେ ପଶିବା ଦରକାର । ତାହେଲେ ଅନେକ ଜିନିଷ ସତରେ ସବୁ ମହାପୁରୁଷଙ୍କ ଜୀବନରେ ତାହାହିଁ ଘଟିଛି । ତୁମର ବା ମୋର ନ ଘଟିବ କାହିଁ ?

# ତୁଷାର ବିଜୟୀ ତେନ୍‌ସିଂ

ପର୍ବତ ସଙ୍ଗେ ଲଢ଼ି ମନୁଷ୍ୟ କେମିତି ବିଶ୍ୱବିଖ୍ୟାତ ହୁଏ ଯଦି ନ ଜାଣିଥାନ୍ତୁ; ତେବେ ତେନ୍‌ସିଂ ପର୍ବତ ଗଳ୍ପ ଶୁଣନ୍ତୁ । ପାଠ ନାହିଁ, ଶାଠ ନାହିଁ, ଶ୍ରୀଅକ୍ଷର ବିବର୍ଜିତ, ଅଥଚ ତାଙ୍କୁ ଭେଟିବା ପାଇଁ ରାଜା ତ୍ରିଭୁବନ ଓ ରାଜରାଣୀ ଏଲିଜାବେଥ ଅନାଇ ରହିଥିଲେ; ତାଙ୍କର ମଥାରେ ଚୂଆ ଚନ୍ଦନ ବୋଳିଦେବା ପାଇଁ ନେପାଳ ରମଣୀ ଧାଡ଼ି ଧରି ଠିଆ ହୋଇଥିଲେ, ତାଙ୍କର ପାଟିରୁ ପଦେ କଥା ଶୁଣିବା ପାଇଁ ଆମେରିକାର ଜେମସବର୍କ୍ ନେପାଳ ଜଙ୍ଗଲରେ ଘୂରି ବୁଲୁଥିଲେ । ପୃଥିବୀରେ କେତେଜଣ ସାକ୍ଷରଙ୍କୁ ଏ ନିରକ୍ଷରଙ୍କର ସୌଭାଗ୍ୟ ମିଳେ ?

କେବଳ ପାର୍ବତୀଙ୍କ ତପସ୍ୟା ପାଇଁ ହିମାଳୟ ସାଧନାଭୂମି ନୁହେଁ, ତାହା ଆଜି ବହୁ ଲୋକଙ୍କର ସାଧନାର ତୀର୍ଥ । ବିଲାତର କର୍ଣ୍ଣେଲ ହଣ୍ଟ୍, ନିଉଜିଲଣ୍ଡର ମଧୁରକ୍ଷକ ହିଲାରି; ଭାରତର ହରିଜନ ତେନ୍‌ସିଂ ପ୍ରତ୍ୟେକଙ୍କ ପାଇଁ ତାହା ଆଜି ତପୋଭୂମି । କାଳିଦାସ କଳ୍ପନା ଅବା ମିଥ୍ୟା ହୋଇପାରେ; କିନ୍ତୁ ତେନ୍‌ସିଂ ଅନୁଭୂତିକୁ ମିଥ୍ୟା କହିବ କିଏ ? ମନେପଡ଼େ ପାର୍ବତୀ ତପସ୍ୟା-କାଳର ସେହି ଉତ୍କଟ ଶୀତଋତୁ, ସୁଉ-ସୁଉ ଶୀତ ପବନ ବରଫ ବିନ୍ଦୁର ତୀବ୍ର ଦଂଶନ । କିନ୍ତୁ ଆଜି ଯାହା ଘଟିଛି, ସେହି ସତ୍ୟ ନିକଟରେ ମଣିଷର କଳ୍ପନା ବି ନିଷ୍ପ୍ରଭ ହୋଇପଡ଼ୁଛି । ତେନ୍‌ସିଂ କହନ୍ତି, ହିମାଳୟ ଆରୋହଣବେଳେ ଗ୍ଲାସ ଟିକିଏ ବି ପକାଇଦେଲେ ତାହା ସଙ୍ଗେ ସଙ୍ଗେ ବରଫ ହୋଇ ଗୋଡ଼ି ପରି ଗଡ଼ି ଯାଏ । ନିଜର ନିଶ୍ୱାସ ବି ବରଫ ପାଲଟି ମୁହଁ ଦେହ ଛିଡ଼ିଆଡ଼ ହୋଇ

ହୋଇଯାଏ । ଦେହରେ ରକ୍ଷସ ପରି ଚମଡ଼ା ପୋଷାକ, ପିଠିରେ ଅକ୍ସିଜନ ବ୍ୟାଗ; ସବୁ ସତ୍ତ୍ୱେ ରକ୍ତ ଏମିତ ଶୀତଳ ହୋଇ-ଯାଏ ଯେ, କଥା ମାତ୍ର ତାକୁ ଗରମ କରିବାକୁ ହୁଏ । କାହାର କନ୍ୟାମାନେ ହିମାଳୟରେ ହେଲେ ତ ପାଣ୍ଡବଙ୍କର ସାହା ଥିଲେ, କାହୁ ଅଣତିରିଶ ହଜାର ଫୁଟ ଉପରେ ହିଲାରି ଓ ତେନ୍‌ସିଂଙ୍କୁ ଆହା କରିବା ପାଇଁ କିଏ ଥିଲେ ? ପାଣ୍ଡବ ଚେଷ୍ଟା କରୁଥିଲେ ପ୍ରଭୁଷ ଶିବଙ୍କୁ ପ୍ରସନ୍ନ କରିବା ପାଇଁ; ମାତ୍ର ତେନ୍‌ସିଂ ଯୁଦ୍ଧଥିଲେ ନାସ୍ତି ହାତରେ ବିଶ୍ୱଗୌରବ ଉଭିଦେବା ପାଇଁ—ମାନେ, ଇଂଲଣ୍ଡର ରାଣୀ ଏଲିଜାବେଥଙ୍କ ଅଭିଷେକ ଦିନରେ ତାଙ୍କୁ ବିଶ୍ୱର ଉଚ୍ଚତମ ସ୍ଥାନର ବିଜୟ ଗୌରବ ଉପହାର ଦେବା ପାଇଁ । ତାହାହିଁ ହେଲା—ପାଞ୍ଚଫୁଟ ଛଅଇଞ୍ଚର ତେନ୍‌ସିଂ ଅଣତିରିଶ ହଜାର ଦୁଇ ଫୁଟ ଉଚ୍ଚ ଏଭରେଷ୍ଟ ଶୃଙ୍ଗରେ ପାଦ ଦେଇ ଠିଆ ହେଲେ । ଘାସବୁଣାରେ ସତେ ଯେମିତ ପିମ୍ପୁଡ଼ି !

ଥିମା ବୋଲି ନେପାଳରେ ଗୋଟିଏ ଗ୍ରେଟ ଗାଁରେ ତେନ୍‌ସିଂଙ୍କ ଜନ୍ମ । ପାଠଶାଠ କିଛି ନାହିଁ, ଖାଲି ନାଁଟି ଦସ୍ତଖତ କରି ଜାଣନ୍ତି । ଚୀନ ଉପକୂଳର ଝଣ୍ଡିଆ ଇଂରାଜୀ କହନ୍ତି । ଘର ଗରିବ ସେ । ମଝିରେ ମଝିରେ ଉପାସ ବି ରହନ୍ତି । ପେଟ ପୋଷିବା ପାଇଁ ପର୍ବତ ଚଢ଼ା ବ୍ୟବସାୟ କରିଥାନ୍ତି । ପଇସା ନ ମିଳିଲେ ପର୍ବତଚୂଡ଼ାକୁ ଅନାଇ ବସନ୍ତି, ତାରା ଗଣନ୍ତି । ତାଙ୍କ ଜାତିର ଲୋକଙ୍କର ଧାରଣା ଯେ, ହିମାଳୟ ବୁଦ୍ଧଦେବଙ୍କର ବିଚରଣ ସ୍ଥଳୀ, ତା ଉପରକୁ ମଣିଷ ତ ମଣିଷ, ପକ୍ଷୀ ବି ଉଡ଼ିପାରେ ନାହିଁ । ସାହେବମାନେ କହନ୍ତି, ଏଭରେଷ୍ଟ ଶୃଙ୍ଗକୁ ଜୟ କରିବା; ମାତ୍ର ତେନ୍‌ସିଂ କହନ୍ତି, ବୁଦ୍ଧ ଦର୍ଶନ

କରିବା, ଉପାସନା କରିବା । ବିଦେଶୀମାନେ ବିଜୟ ଖୋଜୁଥିବା-ବେଳେ ତେନ୍‌ସିଂ ଖୋଜୁଥିଲେ ବୁଦ୍ଧ ଦେବତାଙ୍କୁ ।

କୋଡ଼ିଏ ବର୍ଷ ତଳେ ୧୯୩୩ ରେ ଥରେ ତେନ୍‌ସିଂ ଘର ଛାଡ଼ି ଜଣେ ବନ୍ଧୁଙ୍କ ସଙ୍ଗେ ଦାର୍ଜିଲିଂ ପଳାଇଲେ । ସେଇଠି ସେ ପର୍ବତଚଢ଼ା ଶିଖିଲେ । ସେଠି ସେମାନେ ଲୋକଙ୍କ ଠାରୁ ଶୁଣିଥିଲେ ଯେ, ହିମାଳୟରେ ଅସୁରମାନଙ୍କ ପରି ଗୋଟାଏ ବୃହତ୍ ବରଫ ମଣିଷ ଅଛି । ସେ ମଣିଷ ମାରେ ନାହିଁ; ମାତ୍ର ଜାମୁଡ଼ ଖାଏ । ଦୁନିଆରେ କେଉଁ ଦେଶରେ ପୁଣି ଗପ ନାହିଁ ? ଏବେ ହିମାଳୟ ବିଜୟ ସରିଗଲା; ତେବେ ବି ତେନ୍‌ସିଂ ବରଫ ମଣିଷ ବା ସ୍ନୋ ମ୍ୟାନ ଦେଖିବାକୁ ପାଇନାହାନ୍ତି । କଳ୍ପନା କେବେ ସତ ହୁଏ ?

୧୯୫୦ ମସିହାରେ ସେ ଫରାସୀ ଆରୋହୀମାନଙ୍କ ସଙ୍ଗରେ ନନ୍ଦାଦେବୀ ଶୃଙ୍ଗରେ ଚଢ଼ିଥିଲେ । ଏଭରେଷ୍ଟ ଆରୋହଣ ଅପେକ୍ଷା ନନ୍ଦା ଆରୋହଣ କଷ୍ଟକର ବୋଲି ସେ କହନ୍ତି । ବରଫରେ ନେପେଟି କରି ପଡ଼ ଥରକେ ଇଞ୍ଚେ ମାତ୍ର ଉଠିବାକୁ ହୁଏ । ଅନେକ ଇଞ୍ଚେ ହେଲେ କେତେ ଯୁଗରେ ମଣିଷ ପର୍ବତ ଶିଖରକୁ ଉଠନ୍ତା ! ଏଥର ହିମାଳୟର ବିଜୟ ହେଲା; କିନ୍ତୁ ମଣିଷର ହେଲା ନାହିଁ । ସମସ୍ତେ ଫେରି ଆସିଲେ । ବାଆ, ବୃଷ୍ଟି ବରଫ, ବାଦଲ ଯା'ର ଅସ୍ତ୍ର, ମାଟିର ମଣିଷ ତା ଆଗରେ କେତେ ମାତ୍ର ।

ପର୍ବତର ନିର୍ମଳ ପବନ ଯେ ପାଇଛି, ତାକୁ ପୃଥିବୀର ଧୂଳିଆ ପବନ ଭଲ ଲାଗିବ କେଉଁଠି ? ପୁଣି ୧୯୫୩ ରେ ସ୍ୱିଜରଲାଣ୍ଡ

ଆରୋହୀମାନଙ୍କ ସଙ୍ଗରେ ଟେନ୍‌ସିଂ ପର୍ବତ ଉଠିଲେ । ଏଥର ସେମାନେ ୨୮୨୧୫ ଫୁଟ ଉଠିଲେ । ବିଜୟର ଆଶା ଜଳି ଉଠିଲା । ହିମାଳୟ କିନ୍ତୁ ଉପୁରେ ବେଢ ଝାଡୁଦେଲା । ବରଫ-ଝଡ଼ରେ ଆରୋହୀମାନେ ଝଡ଼ି ପଡ଼ିଲେ । ଖାଇବାକୁ ନାହିଁ, ପିଇବାକୁ ନାହିଁ, ଚବିଶ ଘଣ୍ଟା ସେମାନେ ଗୋଟାଏ ଜାଗାରେ ମୁହଁ-ମାଡ଼ି ପଡ଼ି ରହିଲେ । ଝଡ଼ି ଶେଷକୁ ଦେହରେ ପେଟ ପୋଡ଼ି ଯାଉ-ଥିଲା, ପାଦ ଉଠାଇବାକୁ ବଳ ନ ଥିଲା । ପରାଜୟ ସ୍ୱୀକାର କରି ସେଇଠୁ ସେମାନେ କ୍ୟାମ୍ପକୁ ଫେରି ଆସିଲେ । କିନ୍ତୁ ସେତିକି ଉଚ୍ଚ ଏପର୍ଯ୍ୟନ୍ତ କେହି ଉଠି ନ ଥିଲେ ବୋଲି ବିଜୟ ଗର୍ବରେ ସେମାନେ ନାଚିଲେ । ଫୁଲହାର ତ ନ ଥିଲା, ସ୍ୱିସ୍‌ମାନେ ଧୂଷୁରି-ମାଂସ ହାର କରି ଟେନ୍‌ସିଂଙ୍କ ବେକରେ ପକାଇ ଥିଲେ । ଆରୋହୀମାନେ କହନ୍ତି ଖାଲି କପେ ଲେଖାଏ ଚା' ଥିଲେ, ଚରମ ବିଜୟ ହାସଲ ହୋଇ ପାରିଥାନ୍ତା । ଅବେଳରେ ମାଣିକ୍ୟ ମିଳିବ, ଅଥଚ ବେଳରେ ମାଟି ମୁଠାଏ ମିଳିବ ନାହିଁ । କି ବିଚିତ୍ର ଦୁନିଆ ।

ସ୍ୱିସ୍ ଅଭିଯାନ ପରେ ଟେନ୍‌ସିଂ ଅସୁସ୍ଥ ହୋଇ ପଡ଼ିଲେ । ମାତ୍ର ହିମାଳୟ ପୁଣି ଯେତେବେଳେ ୧୯୫୩ ରେ ହାତ ଠାରି ଡାକିଲା, ସେ ଆଉ ଭୁନ ହୋଇ ରହି ପାରିଲେ ନାହିଁ; ବ୍ରିଟିଶ୍ ଆରୋହୀମାନଙ୍କ ସଙ୍ଗରେ ଏଭରେଷ୍ଟ ଉପରକୁ ଉଠିଲେ । ଏଥର ଆରୋହୀମାନେ ସ୍କଟଲାଣ୍ଡ ପର୍ବତ ଓ ଆଲପ୍‌ସ ପର୍ବତ ଉପରେ ଶିକ୍ଷା ଶେଷ କରି ଆସିଥିଲେ । କେହିରେ ମୁଣ୍ଡରେ ବୋହିବା ପାଇଁ ଯେତେ ଯନ୍ତ୍ରପାତି ଦରକାର; ବ୍ରିଟିଶ୍ ବୁଦ୍ଧି ଖଟାଇ ସବୁ ତିଆରି କରିଥିଲେ; କିନ୍ତୁ ସବୁ ସତ୍ତ୍ୱେ ସେମାନେ କେବେହେଲେ ମାଲିକଙ୍କ ଡାକ ଭୁଲି ନ ଥିଲେ, ଏଭରେଷ୍ଟଠାରୁ କେବେହେଲେ ବସ୍ତା

ଆଶା କରିବା ଉଚିତ ନୁହେଁ । ଠିକ୍ କଥା । ମାଲରୀ ଆଜକୁ ଅଣତିରିଶ ବର୍ଷ ତଳେ ୧୯୨୪ ମସିହାରେ ଏଭରେଷ୍ଟ ଶୃଙ୍ଗର ମୋଟେ ଆଠଶ ଫୁଟ ଦୂରରୁ ଖସି ପଡ଼ିଥିଲେ । ଏବେ ବି ହିମଗିରି ହିମାଳୟ ଶୃଙ୍ଗ ଉପରେ ଖୋଜି ଖୋଜି ତାଙ୍କର କୌଣସି ସନ୍ଧାନ ପାଇ ନାହାନ୍ତି ।

ଟେନ୍‌ସିଂ କହନ୍ତି, ଏଥର ୨୭୯୦୦ ଫୁଟ ଚଢ଼ିଲା ପରେ ସେ ସବୁ ଭୁଲିଗଲେ—ଘର, ଦ୍ୱାର, ପୁତ୍ର କନ୍ୟା ସବୁ । ବିଜୟ ଆଶାରେ ସେ ପାଗଳ ହେଲେ । ହେବ ତ ହିମାଳୟ ଚୂଡ଼ା ସଞ୍ଚରଣ, ନଚେତ୍ ଶରୀର ପତନ । ଯାହା କହନ୍ତି 'ମହାସୁଖ ମହା ଦୁଃଖ ମଧ୍ୟେ ନାହିଁ ମଧ୍ୟମ ଠାବ ।' ସେ ସେର୍ପା ପିଲାଟି । ଓଟମାନଙ୍କୁ ଯେମିତି କହନ୍ତି; 'ମରୁ ଜାହାଜ' ସେର୍ପାମାନଙ୍କୁ ସେମିତି କହନ୍ତି 'ବରଫ ବାଘ' । ଟେନ୍‌ସିଂଙ୍କ ପୂରା ନାମ ଟେନ୍‌ସିଂ ନର୍କା ସେର୍ପା ।

ଋଷି ପ୍ରତିଜ୍ଞାରେ ଇନ୍ଦ୍ରଙ୍କ ଆସନ ଥରିଲା ପରି ଟେନ୍‌ସିଂଙ୍କ ପ୍ରତିଜ୍ଞାରେ ହିମାଳୟ ଥରିଲା । ପୁଣି ହିମାଳୟର ସେହି ପୁରାତନ ଅସ୍ତ୍ର ବରଫଝଡ଼ର ଆଘାତରେ ହିଲାରି ଓ ଟେନ୍‌ସିଂ ଦିନେ ଜାକି ପଡ଼ି ରହିଲେ । ମାତ୍ର ଏକ ସୁନେଲି ସକାଳର ଶୁଭ ଆଶୀର୍ବାଦ ନେଇ ଠିଆ ହେଲେ । ପୁଣି ଦେଉଳକୁ ଅନାଇଲେ ଗର୍ବ ଠେକା ଖସିପଡ଼େ; ହିମାଳୟ କଥା କହିବା କଣ ?

ପୃଥିବୀର ସର୍ବୋଚ୍ଚ ଚୂଡ଼ା ଏଭରେଷ୍ଟ ଯେତେବେଳେ ଊଷାର ଆଲୋକରେ ଉଜ୍ଜ୍ୱଳ, ମନ୍ଦ ସମୀରଣ ସ୍ପର୍ଶରେ ଉତ୍ଫୁଲ୍ଲ ସବୁ ସ୍ଥିର ଶାନ୍ତ—ସେଠି ମାଟି ପୃଥିବୀର ସନ୍ଧାନ ନାହିଁ । ଖାଲି

ଦେବଲୋକର ଆଲୋକ । ସେହି ନିର୍ଜନତା ଭିତରେ ମାତ୍ର ଦୁଇଟି ମଣିଷ—ଅନ୍ୱେଷଣ ଇତିହାସର ଅପ୍ରତିଦ୍ୱନ୍ଦୀ ନେତା । ଦୁହେଁ ପରସ୍ପରଙ୍କୁ କୋଳାଗ୍ରତ କଲେ; ଚିତ୍ର ତୋଳିଲେ ।

ଲୋକେ ପଚାରନ୍ତି, ଏତେ ଉଚ୍ଚରେ ଉଠିଲେ କେମିତି ଲାଗେ ? ଟେନ୍‌ସିଂ କହନ୍ତି, "ପହଞ୍ଚିଗଲେ ଖାଲି ଫେରିବାକୁ ମନ ହୁଏ, କାରଣ ଫେରିବା ପରେ ସିନା ସବୁ ସୁଖ ।" ନେପାଳୀ ଭାରତୀୟ, ଇଙ୍ଗ୍ଲଣ୍ଡୀୟ, ସବୁ ଲୋକଙ୍କୁ ସମାନ ଭାବେ ଖୁସି କରିବାଲାଗି କିଏ ଆଗ ଉପରକୁ ଉଠିଲା କହିବା ପାଇଁ ଟେନ୍‌ସିଂ ମନା କଲେ । ସାଧନାର ଚୂଡ଼ାରେ ସତ୍ୟ ହିଁ ରହିଲା । କିନ୍ତୁ ନୂଆଦିଲ୍ଲୀଠାରୁ ଲଣ୍ଡନ ପର୍ଯ୍ୟନ୍ତ ଟେନ୍‌ସିଂ-ହିଲାରୀ ଅଭିଷେକର ଅଭାବ ରହିଲା ନାହିଁ । ଟେନ୍‌ସିଂ ଏବେ ଦୁଇ କନ୍ୟା ଓ ସ୍ତ୍ରୀଙ୍କୁ ନେଇ ଭାରତରେ ରହନ୍ତି ଏବଂ ତାଙ୍କ ମାଆ ଓ ଭଉଣୀମାନେ ନେପାଳରେ ରହନ୍ତି ।

ଏଭରେଷ୍ଟ ଶୃଙ୍ଗରେ ଉଡ଼ାଇବା ପାଇଁ ହିଲାରୀ ଯେଉଁଦିନ ଟେନ୍‌ସିଂଙ୍କ ହାତକୁ ନେପାଳ, ଭାରତ, ବ୍ରିଟିଶ ଓ ଇଉ. ଏନ୍. ପତାକା ବଢ଼ାଇଦେଲେ, ସେ ଦିନ ୧୯୫୩ ମସିହା ମେ ୨୯ ତାରିଖ । ସେ ଗୌରବର ଦିନକୁ ଭୁଲିବ କିଏ ।

# ଜୀବାଣୁ ଯମ ଲୁଇ ପାସ୍ତ୍ୟୁର

ପଞ୍ଚାଶ ବୋଷଣି, ଆମ୍ବିଳା ଦନ୍ତ, ଆମ୍ବିଳା ମତରେ ଜୀବାଣୁ ଥାଆନ୍ତି—ଏ କଥା ଏବେ ମଧ୍ୟ ଲୋକେ ବିଶ୍ବାସ କରିବା ପାଇଁ ନାରାଜ । କଣ୍ଟା ଘା'ରେ ଧୂଳି ଲାଗି ପୂଜ ବାହାରେ କହିଲେ ସାଧାରଣ ଲୋକେ ହସିବେ, ଗାଁ ଡାକ୍ତରେ ଟିକା ଦିଅ କହିଲେ ଶୁଣିଲେ ଏବେ ବି ପିଲାଙ୍କ ପିଳେହି ପାଣି । ମଣିଷ ରକ୍ତରେ ଅନ୍ୟ ଜୀବାଣୁ ଭରିଦେଇ ରୋଗ ଭଲ କରିଦେବା କଥା ଆଖିରେ ଦେଖି ବି ଆଜି ମନରେ ବିଶ୍ବାସ ହୁଏ ନାହିଁ । ଆଜକୁ ଶହେ ବର୍ଷ ତଳେ ଏ କଥା ଯେ ମନେ କରିଥିବେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଏକ ପ୍ରକାର ପାଗଳାମିରୁ ଦୁନିଆର ସବୁ ନୂଆ କଥାର ସୃଷ୍ଟି । ପାଗଳାମି ଓ ପ୍ରତିଭା ଭିତରେ ତଫାତ୍ ବହୁତ କମ୍ । ଗତ ଶତାବ୍ଦୀର ପାଗଳ ଅଥଚ ବିଂଶ ଶତାବ୍ଦୀର ଏକ ପୂଜ୍ୟ ବୈଜ୍ଞାନିକ ହେଉଛନ୍ତି ଲୁଇ ପାସ୍ତ୍ୟୁର ।

ଫ୍ରାନ୍ସ ସୀମାରେ ଆରବୋ ବୋଲି ଯେଉଁ ଏକ ଛୋଟ ଗାଁରେ ପାସ୍ତ୍ୟୁରଙ୍କ ଘର । ପାସ୍ତ୍ୟୁର ଦେଖିବାକୁ ବାଙ୍ଗର, ଘର ସାଧାସିଧା । ତାଙ୍କଠ ଖାଲି ଦେଖିବାର କଥା ଦୁଇଟି ଉଜ୍ଜ୍ବଳ କଳା ଆଖି । ୧୮୨୨ ମସିହାରେ ତାଙ୍କର ଜନ୍ମ । ତାଙ୍କ ବାପା ନେପୋଲିଅନ ସେନାବାହିନୀର ଜଣେ ସୈନ୍ୟ ମାତ୍ର । ପୁଅର ଶୈଶବ କିଛି ବୁଦ୍ଧି ବିଦ୍ୟା ନ ଦେଖି ସେ ଘାରି ଚିନ୍ତିତ ଥିଲେ । ସ୍କୁଲ ହେଡ୍‌ମାଷ୍ଟର କହନ୍ତି—ଲୁଇ ସେମିତି କିଛି ବୁଦ୍ଧିକା ପିଲା ନୁହେଁ; କିନ୍ତୁ ଯେତିକି କରେ ସେତିକି ପକ୍‌କା କରି କରେ ।

ଯାହାହେଉ ଲୁଇ ସ୍କୁଲରେ ପାସ୍‌କରି ପାରିସ ଗଲେ । ସେଠି ଗବେଷଣାଗାରରେ ରସାୟନ ବିଦ୍ୟା ପଢ଼ିଲେ । ଲୁଇ ଏତେ ଧୈର୍ଯ୍ୟ ଧରି ଏତେ ସମୟ ଗବେଷଣାଗାରରେ ଛୁଡ଼ା ହୁଅନ୍ତି ଯେ, ସମସ୍ତେ ତାଙ୍କୁ 'ଗବେଷଣା ଗୃହର ଖୁଣ୍ଟ' ବୋଲି ନାଁ ଦେଇଥାନ୍ତି । ସତରେ କା'ଠ ପଥର ପରି ଯେ ସ୍ଥିର ନ ହୋଇଛି, ସେ କଣ ଜୀବନ ଯୁଦ୍ଧରେ ଠକି ପାରିବ ? ବାପା ଯୁଦ୍ଧ କରୁଥିଲେ ରଣକ୍ଷେତ୍ରରେ; କିନ୍ତୁ ପୁଅ ଯୁଦ୍ଧ କରୁଥିଲେ ଘରଭିତରେ । ନେପୋଲିଅନ ଯୁଦ୍ଧର ମୃତ ସ୍ମୃତି ଆଜି ଇତିହାସ ପୃଷ୍ଠାରେ ରହିଛି । କିନ୍ତୁ ପାଷ୍ଟ୍ରର ଯୁଦ୍ଧରେ ଜୀବନ୍ତ ସ୍ତମ୍ଭ 'ପାଷ୍ଟ୍ରର ଅନୁଷ୍ଠାନ' ପାରିସ ଅନ୍ତରରେ ମଥା ଟେକି ଠିଆ ହୋଇଛି—ଏବେ ବି ଜୀବାଣୁ ଯୁଦ୍ଧରେ ବ୍ୟାପୃତ ଅଛି ।

ମଣିଷର ଶତ୍ରୁ ଖାଲି ମଣିଷ ନୁହେଁ, ମଣିଷର ଶତ୍ରୁ ସମସ୍ତେ । ଶ୍ରେଷ୍ଠ ଯା'ର ବିଷ ଅଧିକ ପରି ଯେ ଆକାରରେ ଯେତେ ଶ୍ରେଷ୍ଠ, ମଣିଷର ସେ ସେତିକି ବଡ଼ ଶତ୍ରୁ । ପାଣି-ପବନ, ନିଶ୍ୱାସ ପ୍ରଶ୍ୱାସ ପ୍ରତ୍ୟେକ ବସ୍ତୁରେ ମଣିଷର ଶତ୍ରୁ କ୍ଷୁଦ୍ର ଜୀବାଣୁ ସବୁ ଲୁଚି ରହିଛନ୍ତି । ପବନର ଧୂଳିକଣାରେ ସେମାନେ ଆସି ମଣିଷ ଘରରେ ବାସ ସୃଷ୍ଟି କରୁଛନ୍ତି । ମଣିଷ ସିନା ହାତୀ, ବାଘଙ୍କ ପାଇଁ ଫାନ୍ଦ ଖୋଳିପାରେ, ପବନ ପାଇଁ ଫାଶ ବସାଇ ପାରନ୍ତା କାହିଁ ? କିନ୍ତୁ ଏ ବିଚିତ୍ର ଦୁନିଆରେ କିଛି ଅସମ୍ଭବ ନୁହେଁ । ଆମ୍ଳିକା ମଦ ଓ ଧୂଳିକଣାରୁ ପାଷ୍ଟ୍ରର ଯେଉଁ ତଥ୍ୟ ଧରିପାରିଲେ, ତାହା ଦୁନିଆର ଆଖି ଖୋଲି ଦେଲା ।

ଫ୍ରାନ୍‌ସର ଦ୍ରାକ୍ଷାବହୁଳ ଅଞ୍ଚଳରେ ଲିଲ୍ ନାମକ ଏକ ସ୍ଥାନରେ ସେ ପ୍ରଫେସର କାମ କରୁଥିଲେ । ଥରେ ଜଣେ

ମଦ ବେପାରୀ ମଦ ପରୀକ୍ଷା କରିବା ପାଇଁ ତାଙ୍କୁ ଡାକିଥିଲେ । ମଦ କାହିଁକି ଆମ୍ବିଳା ହୋଇଯାଉଛି, ଏହି ତଥ୍ୟ ଗବେଷଣା କରୁ କରୁ ସେ ଦେଖିଲେ ଯେ, ମଦ ଭିତରେ ଛୋଟ ଛୋଟ ଜୀବାଣୁ ସବୁ ଭରି ରହିଛନ୍ତି । ଅବଶ୍ୟ ଖାଲି ଆଖିରେ ନୁହେଁ, ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିଲେ । ସେହିଦିନୁ ସେ ଜୀବାଣୁ-ସଙ୍ଗରେ ଜୀବନ ଆହୁତି ଦେଲେ । ପରୀକ୍ଷାଦ୍ୱାରା ଜାଣିଲେ ଯେ, ଅଧିକ ଉତ୍ତାପରେ ବାକ୍ଟେରିଆ ଜୀବାଣୁ ବଞ୍ଚିପାରନ୍ତି ନାହିଁ । ଏବେ ସଭ୍ୟ ଦେଶ-ମାନଙ୍କରେ ଦୁଧକୁ ନିର୍ଦ୍ଦୋଷ କରିବା ପାଇଁ ଏକ ଉପାୟ ଅବଲମ୍ବନ କରାଯାଏ । ପାସ୍ତୋରଙ୍କ ନାମ ଅନୁସାରେ ତାହାକୁ ପାସ୍ତୋରାଇ ଜେସନ୍ କହନ୍ତି, ଅର୍ଥାତ୍ ପାସ୍ତୋର ପ୍ରଣାଳୀରେ ଦୁଧରୁ ଜୀବନନାଶକ ଜୀବାଣୁମାନଙ୍କୁ ମାରି ଦିଆଯାଏ ।

ତରଳ ପଦାର୍ଥ ଦେହକୁ ଏହି ଜୀବାଣୁ ସବୁ କେଉଁଠୁ ଆସନ୍ତି, ଏହି ତଥ୍ୟ ସେ ଖୋଜି ବସିଲେ । ତାଙ୍କ ପୂର୍ବରୁ ବୈଜ୍ଞାନିକମାନେ ସ୍ଥିର କରିଥିଲେ ଯେ, ଜୀବାଣୁ ଆପେ ଜାତ ହୁଏ । ମାତ୍ର ପାସ୍ତୋର କହିଲେ, ଧୂଳିକଣା ସଙ୍ଗେ ଜୀବାଣୁ ସବୁ ଆସି ଅନୁକୂଳ ଅବସ୍ଥାରେ ଋହି ଘଣ୍ଟାରେ କୋଡ଼ିଏ ଲକ୍ଷ କରି ବଂଶ ବୃଦ୍ଧି କରନ୍ତି । କିନ୍ତୁ ସେ କାନରେ ସେ କଥା ଶୁଣୁଛି କିଏ ?

[illegible]୬ ବେଳକୁ ପାସ୍ତୋରଙ୍କ ଜୀବନ ଏକ ପ୍ରକାର ଅନ୍ଧାର କହିଲେ ଚଳେ । ବାପ ମରିଥାନ୍ତି, ତାଙ୍କ ପଛେ ପଛେ ନିଜର ଦୁଇଟି ପିଲା ମରିଥାନ୍ତି । ପାଟଳ ପକ୍ଷ ସଙ୍ଗେ କଅଁଳ କଷି ଝ ଝସି ପଡ଼ିଥାନ୍ତି । ତଳ ଉପର ସବୁ ଶୂନ୍ୟ ଦିଶୁଥାଏ । ବିପତ୍ତି ଆସିଲେ ଜୀବନ-ବାଲିରେ ଲହରୀ ଖେଳି ଆସେ । ଠିକ୍ ସେହିଭଳି

ବେଳକୁ ପାସ୍ତୋରଙ୍କ ଗୋଟିଏ ଗୋଷ୍ଠ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇଗଲା । କିନ୍ତୁ ତାଙ୍କୁ ସବୁଠୁ ବେଶୀ କଷ୍ଟ ହେଲା ବୈଜ୍ଞାନିକମାନଙ୍କର ଆକ୍ରମଣ । ବୈଜ୍ଞାନିକମାନେ ତାଙ୍କ ଧୂଳି ଜୀବାଣୁ ତଥ୍ୟ ସ୍ୱୀକାର କରିବା ପାଇଁ ରାଜି ହେଲେ ନାହିଁ । ସାଧନାର ପଥ କେବେ ହେଲେ ସରଳ ନୁହେଁ । ସେଥିପାଇଁ ଧୈର୍ଯ୍ୟ ଆବଶ୍ୟକ । ଥରେ ଜଣେ ଜର୍ମାନ ଡାକ୍ତରଙ୍କ ଚିଠି ସେ ପାଇଲେ । ସେହି ଚିଠିରେ ସେ ପାସ୍ତୋରଙ୍କ ଆବିଷ୍କାରକୁ ବହୁ ପ୍ରଶଂସା କରି ଲେଖିଥିଲେ । ତା ଛଡ଼ା ଆଉ ଜଣେ ଡାକ୍ତର ଜୀବାଣୁମାନଙ୍କର କାରସାଦି ପରୀକ୍ଷା କରିବା ପାଇଁ ସୁସ୍ଥ ଦେହରେ କେତେକ ହଇଜା ଜୀବାଣୁ ଗିଳି ପକାଇଲେ; କିନ୍ତୁ ତାଙ୍କର କିଛି ହେଲା ନାହିଁ । କାରଣ ଶରୀରରେ ଜୀବାଣୁ ବୃଦ୍ଧି ପାଇଁ ଅନୁକୂଳ ଅବସ୍ଥା ନ ଥିଲେ ଜୀବାଣୁମାନେ କିଛି କରିପାରିବେ ନାହିଁ । ଏହି ଅଦ୍ଭୁତ କଥା ଶୁଣି ଓ ପ୍ରଶଂସାପୂର୍ଣ୍ଣ ଚିଠି ପାଇ ପାସ୍ତୋର ପୁଣି ଚେଇଁ ଉଠିଲେ । ତାଙ୍କର ଉଜ୍ଜଳ ଆଖି ଆହୁରି ଉଜ୍ଜ୍ୱଳ ଦେଖାଗଲା । ସେ କାମରେ ଲାଗିଲେ । ମଣିଷ ଜୀବନରେ ପ୍ରଶଂସାର ମୂଲ୍ୟ କମ୍ ନୁହେଁ ।

ଫ୍ରାନ୍ସରେ କେତେବେଳେ ଚୋଷା ପୋକ, କେତେବେଳେ କୁକୁଡ଼ା ଓ କେତେବେଳେ ମେଣ୍ଢାଙ୍କୁ ବିସୂଚିକା ରୋଗ ଧରିଲା । ଲୋକମାନେ ପାସ୍ତୋରଙ୍କ ପାଖକୁ ଧାଇଁଲେ । ପାସ୍ତୋର ସେହି ରୋଗର ଜୀବାଣୁ ନେଇ ନୀରୋଗ ଜୀବଙ୍କୁ ଟିକା ଦେଲେ । ଫଳରେ ଦେଖାଗଲା ଯେ ସେମାନେ ଆଉ ରୋଗାକ୍ରାନ୍ତ ହେଲେ ନାହିଁ; ବରଂ ଯେଉଁମାନେ ଟିକା ନ ନେଇଥିଲେ, ସେହିମାନେ ହିଁ ମୃତ୍ୟୁମୁଖରେ ପଡ଼ିଲେ । ସତରେ ଯାହା କହନ୍ତି, 'ଗରମକୁ ଗରମ କାଟେ,

ନରମକୁ ନରମ କାଟେ ।” ଜୀବାଣୁକୁ ଜୀବାଣୁ ମାରେ ମାଡରେ 'କଣ୍ଟକେନୈବ କଣ୍ଟକଂ' କରି ପାସ୍ତୋର ଦୁନିଆକୁ ନୂତନ ସନ୍ଧାନ ଦେଲେ, ମନୁଷ୍ୟ ଜାତିକୁ ଜୀବାଣୁ ହାତରୁ ରକ୍ଷା କଲେ ।

ଘୋଷା ଘୋଡ଼ା ଓ କୁକୁଡ଼ା ସଙ୍ଗେ ମଣିଷ ଖେଳିପାରେ, ଜୀବନ ପରୀକ୍ଷା କରିପାରେ ମାତ୍ର ମଣିଷ ଉପରେ ଏ ପରୀକ୍ଷା କରିବାର ସାହସ କାହାର ଅଛି, ବିଶେଷତଃ ସେ ଯୁଗରେ ? ଥରେ ଜୋସେଫ ବୋଲି ଗୋଟିଏ ଛୋଟ ପିଲାକୁ କୁକୁର କାମୁଡ଼ିଲା । ମଣିଷପିଲାକୁ ପାସ୍ତୋର ପରୀକ୍ଷା କରିବେ କେମିତି ? ସବୁ ବଡ଼ ବଡ଼ ବନ୍ଧୁ ଭ୍ରୂ କୁଞ୍ଚିଲେ । ଯାହା ହେଉ ପଛେ, ପାସ୍ତୋର ଚିକିତ୍ସା କରନ୍ତୁ ବୋଲି ପିଲାର ମା ବି ଅନୁରୋଧ କଲେ । ସେତେବେଳେ ଠିକ୍ ଦିନ ପାଞ୍ଚଟା ବେଳେ ପିଲାର କ୍ଷତରୁ ଟିକିଏ ଆଡ଼େଇ ଦେଇ ପାସ୍ତୋର ଜୀବାଣୁ ଟିକା ଦେଇ ଦେଲେ । ମୁହୂର୍ତ୍ତକ ପରେ ପିଲା କାନ୍ଦ କାନ୍ଦ ହେଲା; କିନ୍ତୁ ସୁସ୍ଥ ହେଲା ନାହିଁ । ଦିନ ପରେ ଦିନ ଏଗାର ଦିନ ଔଷଧ ଚିକିତ୍ସା ପରେ ପିଲା ସମ୍ପୂର୍ଣ୍ଣ ସୁସ୍ଥ ହେଲା । ପାସ୍ତୋର ପ୍ରତିଷ୍ଠା ଦୁନିଆସାରା ବାଜିଉଠିଲା । ସାରା ଇଉରୋପ ଫ୍ରାନ୍ସ ଆଡ଼କୁ ଅନାଇ ରହିଲା । ଏବେ ବି ପାରିସର ପାସ୍ତୋର ଅନୁଷ୍ଠାନକୁ ଅନାଇ ମଣିଷଜାତି କମ୍ ଆଶ୍ୱାସନା ପାଏ ନାହିଁ ।

---

# ଯାହାଙ୍କ ଛାୟା ଚୁମ୍ବକ ପାଇଁ ଲୋକେ ଛୁକି ରହୁଲେ

କୁସୁମକଅଁଳ ନାରୀର କରୁଣା ବ୍ୟତିରେକେ ଲୁହାଟାଣ ମଣିଷଜାତି କେମିତି ନିଃସହାୟ ହୋଇପଡ଼େ, ତାର ପ୍ରମାଣ ଯଦି ଅନ୍ୟ କେଉଁଠି ପାଇ ନାହାନ୍ତି, ତେବେ ୧୮୫୪ ମସିହା ସେପ୍ଟେମ୍ବର ମାସର ଲଣ୍ଡନ ଟାଇମସ କାଗଜ ଖୋଜନ୍ତୁ । ସେଇଥିରେ ଦେଖି ପାରିବେ, ସେଠାକାର ଟାଇମସ ସମ୍ପାଦକ ସାର୍ ଉଇଲିୟମ୍ ହାୱାର୍ଡ଼ ରସେଲ କଣ ଲେଖିଛନ୍ତି । ଲେଖା ତ ନୁହେଁ—ନିବେଦନ, ନିଃସହାୟର କରୁଣ ଆର୍ତ୍ତନାଦ । ରସେଲଙ୍କ ନିବେଦନ ତେବେ ଶୁଣନ୍ତୁ—

ସ୍କୁଟାରୀ ଡାକ୍ତରଖାନାରେ ଆହତ ସୈନ୍ୟମାନଙ୍କର ସାହା ହେବା ପାଇଁ ଇଂଲଣ୍ଡରେ କଣ କେହି ହେଲେ ମା ଭଉଣୀ ନାହାନ୍ତି ? ଜୀବନର ଏହି ମୁହୂର୍ତ୍ତରେ ନାରୀଠାରୁ କରୁଣା ଆଶା କରିବା କଣ ଅନ୍ୟାୟ ?···ଏହିପରି ନାନା କଥା ।

ସେବା ତ୍ୟାଗ ଇଂରେଜରମଣୀଙ୍କୁ ଶିଖାଇବାକୁ ପଡ଼େ ନାହିଁ । ତେଣୁ ହଜାର ହଜାର ଦରଖାସ୍ତ ଆସି ପହଞ୍ଚିଲା । ସବୁ ଦରଖାସ୍ତ ପଛକୁ ପକାଇ ଇଂଲଣ୍ଡର ସରକାର କେବଳ ଜଣକ ହାତକୁ ଅନାଇ ରହିଲେ । ସେହି ଯିବେ ତ ମହତ ରହିବ, ନଚେତ୍ ସବୁ ହସିଯିବ । ଉନ୍ମତ ଇଂରେଜ କବି ସିନା ଗୀତ ଗାଉଥିଲେ 'ରଞ୍ଜିତ ଅସି ଧାରେ ଶତ୍ରୁ ରକ୍ତ ଗାରେ,' ଏବେ କ୍ରିମିଆ ରଣକ୍ଷେତ୍ର ଯେତେବେଳେ ଇଂରେଜ ରକ୍ତରେ ରଙ୍ଗୀନ୍ ହୋଇ ଉଠୁଛି, ସେତେବେଳେ ଆହା କହିବ କଏ ? ନିଆଁ ଲଗାଇଦେବା ଅତି

ସହଜ; କିନ୍ତୁ ଲଢ଼ିବା ବଡ଼ କଠିନ । ଇଂରେଜ ଲୋକେ ବଡ଼ ଅପ୍ରସ୍ତୁତ ହୋଇ କ୍ରିମିଆ ଯୁଦ୍ଧରେ ପଶିଥିଲେ । ସେଥିପାଇଁ ସେମାନଙ୍କୁ ବହୁ ମୂଲ୍ୟ ଦେବାକୁ ପଡ଼ିଲା । ହଁ, ସେ ଭାଗ୍ୟବତୀ ନାରୀ ଜଣକ କିଏ ଜାଣନ୍ତି ତ ? ନାଁ ଫ୍ଲାରେନ୍‌ସ ନାଇଟିଙ୍ଗେଲ୍ । ଇଂରେଜୀ ରକ୍ତ, ଇଂଲଣ୍ଡରେ ଘର, ଅଥଚ ଇଟାଲୀୟ ଫ୍ଲାରେନ୍‌ସ ନାଁଟା ଭାରି କାନ୍ତ, ଭାରି କୋମଳ, କବିତାମୟ । ଫ୍ଲାରେନ୍‌ସ ଜନ୍ମ ହୋଇଥିଲେ ଇଟାଲୀୟ ଫ୍ଲାରେନ୍‌ସ ସହରରେ । ଉପରେ ଉଜ୍ଜ୍ୱଳ ନୀଳ ଆକାଶ, ତଳେ ଶାନ୍ତଶିଷ୍ଟ ଲହରୀମାଳା; ଦେହରେ ଭୂମଧ୍ୟସାଗରୀୟ ବାୟୁର କାନ୍ତ କୋମଳ ପରଶ । ସୌନ୍ଦର୍ଯ୍ୟର କେଉଁଠି ମଧ୍ୟରେ ସୁନ୍ଦରୀଙ୍କର ଜନ୍ମ । ଏବେ ସେ ନାରୀ ନୁହନ୍ତି, ବିଶ୍ୱର ଆଲୋକ ।

ଇଂଲଣ୍ଡର ଡର୍ବିସାୟାରର ଓ ହାମ୍ପସାୟାରର କୋମଳ କୋଳରେ ନାଇଟିଙ୍ଗଲଙ୍କର ଘର । ବାପ ମାଙ୍କର ଦୁଇଟି ଝିଅ । ଫ୍ଲାରେନସ ନାଇଟିଙ୍ଗେଲ ସାନ । ନାଁଟି ଯେମିତି, ଚେହେରା ସେମିତି । ଉଭୟଙ୍କୁ ବଳି ଫ୍ଲାରେନ୍‌ସଙ୍କ ମନ ଭାରି ବୁଦ୍ଧିମତୀ, ସ୍ମିତହାସୀ, ମୁକ୍ତାର ମଳ୍ଲୀ ଫୁଟାଇ ସେ କଥା କହନ୍ତି । ସବୁ ସୁଖ ଭିତରେ ଥାଇ ଫ୍ଲାରେନ୍‌ସଙ୍କ ଅନ୍ତରରେ ସବୁବେଳେ ଗୋଟିଏ ପ୍ରଶ୍ନ ଓଲଟପାଲଟ ହୋଇ ଉଙ୍କି ମାରୁଥିଲା । ଏହି ଜୀବନଟା କଣ ? ଖାଲି କଣ ହସି ଖେଳ କଟାଇଦେବା; ନା ଆଉ କିଛି ମହତ୍ ଉଦ୍ଦେଶ୍ୟ ଅଛି ? ଗୋପା-କୋଳରେ ସତେ ଯେମିତି ବୁଦ୍ଧଦେବଙ୍କର ଚିନ୍ତା ଆଲୋଡ଼ନ । ଶେଷରେ ସେ ଠିକ୍ କଲେ, ସେବା କରିବେ, ନର୍ସ ହେବେ, ମାତୃଜାତି ମହିମା ରକ୍ଷା କରିବେ; ତାହା ହିଁ ହେଲା । ଲଣ୍ଡନ, ଏଡ଼ିନ୍‌ବର୍ଗ, ଡବ୍ଲିନ୍, ପାରିସ ଓ ଅନ୍ୟାନ୍ୟ

ଅନେକ ସ୍ଥାନରେ ନର୍ସ ଶିଖିଲେ । ଯାହା ଶିଖିଲେ ନାହିଁ ତ ପ୍ରମାଣ ହୋଇଉଠିଲେ । ଯଦି ବିଶ୍ୱାସ ନ ହେଉଛି ତେବେ ବିଲାତ ଯୁଦ୍ଧମନ୍ତ୍ରୀ ସିଡ୍‌ନି ହର୍ବର୍ଟଙ୍କ ଚିଠି ପଢ଼ନ୍ତୁ -

ପ୍ରିୟ କୁମାରୀ ନାଇଟିଙ୍ଗେଲ୍ !

......ଏ ସାରା ଇଂଲଣ୍ଡରେ ତୁମେ ଏକମାତ୍ର ନାରୀ, ଯେ କ୍ରିମିଆ ଯୁଦ୍ଧରେ କୋଟି କୋଟି ଆହତ ସୈନିକଙ୍କର ସେବା କରିପାରିବ । ତୁମକୁ ଅନୁରୋଧ କରିବା ପାଇଁ ଅନେକ ବାର ଭାବିଛି; ମାତ୍ର ସାହସ କରି ପାରୁନି । ତୁମକୁ ଏହି ସେବା ଲାଗି ବାଧ୍ୟ କରିବା ମୋର ଶକ୍ତିର ବାହାରେ । କିନ୍ତୁ ଜାତିର ସେବା ପାଇଁ ଯଦି ସେବିକା ସାଜିବା ଲାଗି ରାଜି ହୁଅ, ତେବେ ତୁମେ ତୁମ ହାତରେ ଅଖଣ୍ଡ କ୍ଷମତା ନେଇ ତୁମକୁ ସ୍କୁଟାରୀ ଡାକ୍ତରଖାନାକୁ ପଠାଇ ଦିଆଯିବ । ଭଗବାନଙ୍କ ନିକଟରେ ମୋର ପ୍ରାର୍ଥନା, ତୁମେ ମୋ ସହିତ ଯେମିତି ଏକମତ ହୁଅ ।

ତୁମର ବିଶ୍ୱସ୍ତ
ସିଡ୍‌ନି ହର୍ବର୍ଟ

କିଏ କାହା ପାଖକୁ ଲେଖିଛନ୍ତି ? ଇଂଲଣ୍ଡର ଯୁଦ୍ଧମନ୍ତ୍ରୀ ଲେଖିଛନ୍ତି କୁମାରୀ ନାଇଟିଙ୍ଗେଲଙ୍କ ପାଖକୁ । ଅଥଚ କି ସଙ୍କୋଚ, କି ଭୟ ! ପ୍ରଜାଙ୍କ ନିକଟରେ କ୍ଷମତାର କି କରୁଣ ନିବେଦନ ! ଆଶ୍ଚର୍ଯ୍ୟର କଥା, ଠିକ୍ ଯେତେବେଳେ ଏହି ଚିଠି ତାଙ୍କ ପାଖକୁ ଆସୁଥିଲା, ଫ୍ଲୋରେନ୍‌ସଙ୍କ ଚିଠି ହର୍ବର୍ଟଙ୍କ ପାଖକୁ ଯାଉଥିଲା । ହର୍ବର୍ଟଙ୍କଠାରୁ ଅନୁରୋଧ ପାଇବା ପୂର୍ବରୁ ସେ ଆପେ ଆପେ

ସ୍ଥିର କରିଥିଲେ ସେ ଯୁଦ୍ଧରେ ଯୋଗ ଦେବେ, ଆହତ ସୈନ୍ୟଙ୍କର ସେବା କରିବେ ।

ମନେ ରଖନ୍ତୁ, ସେ କିଛି ଆଜିକାଲି କଥା ନୁହେଁ । ଆଜି ତ ସ୍ତ୍ରୀ ପୁରୁଷ ସମସ୍ତେ ସମାନ କହିଲେ ଚଳେ; ୧୮୫୪ ମସିହା ଊନବିଂଶ ଶତାବ୍ଦୀର ମଧ୍ୟଭାଗ, ଯେତେବେଳେ ଝିଅମାନେ ପାଦ ପର୍ଯ୍ୟନ୍ତ ଲୁଗା ନ ପିନ୍ଧିଲେ ପଦାକୁ ବାହାରିବେ ନାହିଁ, ସେତେବେଳେ ଏକେତ ଯୁଦ୍ଧକୁ ଯିବେ, ପୁଣି ପୁରୁଷ ସୈନ୍ୟ ମେଳରେ ଜଣେ ନାରୀ ରହି ସେବା କରିବା କି ଅସମ୍ଭବ କଥା; ବର୍ତ୍ତମାନ ତା ଧାରଣା କରି ହେବ ନାହିଁ । ଏ ସବୁ ସତ୍ତ୍ୱେ ବି ସେ ଗଲେ ।

କ୍ରିମିଆ ଯୁଦ୍ଧରେ ଆହତ ସୈନ୍ୟମାନଙ୍କୁ ସ୍କୁଟାରୀ ଡାକ୍ତର-ଖାନାରେ ଚିକିତ୍ସା କରାଯାଉଥିଲା । ସ୍କୁଟାରୀ ହସ୍ପିଟାଲ୍ ଏକ ଚମତ୍କାର ଚିତ୍ତାକର୍ଷଣ ଦୃଶ୍ୟ କହିଲେ ଚଳେ । ପାହାଡ଼ର ଉନ୍ନତ ଚୂଡ଼ା ଉପରେ ଭବ୍ୟ ସୁନ୍ଦର ପଥର ଏକ ବିଶାଳ ଗୃହ । ଉପରେ ନୀଳ ଆକାଶ, ପାଦତଳେ ନୀଳ ଲହରୀ ଖେଳ । ବାହାରେ ପ୍ରକୃତିର ଉଦାରତା ଯେତିକ ମହତ୍ ଭିତରେ ମନୁଷ୍ୟର୍ କାର୍ପଣ୍ୟ ସେତିକି ଖର୍ବ । ଜୀବନରେ ଯଦି କେବେ ଏକ ସ୍ଥାନରେ ହଜାର ହଜାର ମୃତାହତ ସୈନ୍ୟ ଦେଖିଛନ୍ତି, ତେବେ ସେହି ବିଷୟଟିକୁ କଳ୍ପନା କରନ୍ତୁ । ଦାନ୍ତେଙ୍କର ନର୍କ ଶୀତଳକାରୀ ଦୃଶ୍ୟ ତା ଆଗରେ କିଛି ନୁହେଁ । କୁମାରୀ ଫ୍ଲୋରେନ୍ସ ଯେତେବେଳେ ସ୍କୁଟାରୀ ହସ୍ପିଟାଲ୍ ଭିତରକୁ ପଶନ୍ତି, ଦୃଶ୍ୟ ଦେଖି ଆଖି ତାଙ୍କର ବୁଜି ହୋଇଗଲା । ହଜାର ହଜାର ଆହତ ସୈନିକ ଦଳ ଦଳ ଧରି ପଡ଼ିଛନ୍ତି । କାହା ଘାଆରେ ପୋକ ଚରୁଛନ୍ତି ତ କାହାର ହାତ

ଗୋଡ଼ ସଡ଼ି ଯାଇଛି । ଲୁଗା ସଙ୍ଗେ ରକ୍ତମାଂସ ମିଶିଯାଇଛି । ଗୋଡ଼ ଫୁଲି ଯୋତା ସଙ୍ଗେ ମିଶିଯାଇଛି । ଯୋତା ଫିଟାଇବା ମାନେ ପାଦକୁ ଖଣ୍ଡ ଖଣ୍ଡ କରି କାଟିବା । ଲୁଗା ନାହିଁ, ବ୍ୟାଣ୍ଡେଜ୍ ନାହିଁ, ସାବୁନ ନାହିଁ, ଖାଲି ମଇଳା, ଜାନୁଆରି ଖାଲି ପୋକ-ଜୋକ । ସ୍କୁଟାରି ଯେମିତି ମୃତ୍ୟୁ ବଛେଇ ହୋଇ ଯାଇଛି ।

ଜାହାଜ ଦେହରୁ ଆହତ ସୈନ୍ୟମାନଙ୍କୁ ବୋହି ନ ଆଣି ଘୋଷାରି ଆଣି ଗଦେଇ ଦିଆ ଯାଇଥିଲା । ହସ୍ପିଟାଲରେ ବିଛଣା ନ ଥିଲା । ଭିତର ଲୋକ ମଲେ ଯାଇ ବାହାର ଲୋକଙ୍କୁ ସ୍ଥାନ ମିଳୁଥିଲା । ସନ୍ଧ୍ୟାବେଳେ ମହମବତୀର ମିଞ୍ଜି ମିଞ୍ଜି ଆଲୁଅରେ ମୂଷାମାନେ ଆସି ସୈନିକମାନଙ୍କର ରକ୍ତ ଖାଉଥିଲେ । ବଧିରୁ କି ବଡ଼ଯନ୍ତ୍ରଣା ! ଯାହା କହନ୍ତୁ, ମୂଷା ଛଡ଼ିବାକୁ ନାହିଁ ଆଜି ବଳ । ସୁକୁମାରୀ ଫ୍ଲୋରେନ୍‌ସ ହସ୍ପିଟାଲରେ ପଶିଲାବେଳକୁ ଛଅଟା କୁକୁର ମରିକରି ସଡ଼ି ଯାଇଛନ୍ତି । ସେଇମାନଙ୍କୁ ପ୍ରଥମେ ଉଠାଇଲେ ତେଣିକି ଯେଉଁ କାମ । ନିଜକୁ ଟିକିଏ ଟିକିଏ ପଚାରନ୍ତୁ ! ଫ୍ଲୋରେନ୍‌ସ ତ ପୁଣି କୁମାରୀ, ପୁଷ୍ପକୋମଳ ତରଳ ତଳତଳ; ଲାବିଣ୍ୟର ଫୁଲ ବଣରେ ତାଙ୍କର ଘର । ସେ ଗୁଣ୍ଡପାଣି ହୋଇ ବହି ନ ଗଲେ କେମିତି । ମାତ୍ର ଗୋଟିଏ କଥା ଭୁଲିବାର ନୁହେଁ । ଫ୍ଲୋରେନସଙ୍କ ହୃଦୟ ମାତୃହୃଦୟ । ପୁରୁଷ ବାହ୍ୟଯୁଦ୍ଧରେ ଲୁହାପରି କଠିନ ହୋଇପାରେ; ମାତ୍ର ସେବା-କ୍ଷେତ୍ରରେ ନାରୀହୃଦୟ ବଜ୍ରଠାରୁ କଠିନ । ପୁଷ୍ପକୋମଳ ମାତୃହୃଦୟରେ ବଜ୍ରକଠିନ ସେବାଭାବ ନ ଥିଲେ ଜୀବଜଗତ୍ କେଉଁଦିନୁ ଶେଷ ପାଇ ସାରନ୍ତାଣି । ଦୀର୍ଘନିଶ୍ୱାସ ପକାଇ ଫ୍ଲୋରେନ୍‌ସ ଅଣ୍ଟା ଭିଡ଼ିଲେ— ନିଃସହାୟର ସହାୟ ହେବେ, ମାତୃହୀନର ମାତା ହେବେ ।

କାମ ଚାଲିଲା । ଛଅମାସ ଭିତରେ ଫ୍ଲରେନ୍ସ ଉପର ତଳର
ବନ୍ଦଣା ଠିକ୍ କରିଦେଲେ । ଆଜି ସବୁ ଜଳସ ଗୁଡ଼ିକ ଖାଲି ସପ୍ତାହକୁ
ପାଞ୍ଚଶହ କାମିଜ କେବଳ ଧୋଇଲେ । ସେଷେଇ ଘରର ଚେହେରା
ସମ୍ପୂର୍ଣ୍ଣ ବଦଳାଇ ଦେଲେ । ଯେଉଁଠି ଲୋକେ ଖାଲି ରୁଟି ପାଣି ଖାଇ
ନ ଥିଲେ, ସେଠି କୁକୁଡ଼ା ଝୋଳର ଗନ୍ଧରେ ମୃତ ସୈନିକ ବି ଉଠି
ବସିଲା । ହଜାର ହଜାର ରୁଗ୍ଣର ପ୍ରକାଶ୍ୟ ନର୍ସ ଫ୍ଲରେନ୍ସଙ୍କ
ଆଦେଶକୁ ଅନାଇ ରହିଲେ । ଫ୍ଲରେନ୍ସ ଶକ୍ତିରେ ଶାସନ ନ କରି
ସ୍ନେହରେ ଶାସନ କରିବାରୁ ହଜାର ହଜାର ଲୋକ ଦିନ ରାତି
ହାଜର ରହିଲେ, ଆଦେଶ ନ ମିଳୁଣୁ କାମ କରିଗଲେ । ସବୁଆଡ଼ୁ
ସଫାସୁତୁରା ସବୁ ହସ ହସ—ସତେ ଯେମିତ ସ୍କୁଟାରି ହସ୍ପିଟାଲରେ
କରୁଣାର ଧାରା ବହିଯାଉଛି । ଏତେ ଲୋକ ସତ୍ତ୍ୱେ ଫ୍ଲରେନ୍ସ
ବେଳେବେଳେ ଏକା ସ୍ଥାନରେ କୋଡ଼ିଏ ଘଣ୍ଟା ଲେଖାଏଁ ଠିଆ
ହୋଇ କାମ କରନ୍ତି । ରାତିରେ ହାତରେ ଦୀପ ନେଇ ପ୍ରତ୍ୟେକ
ବନ୍ଦଣା ବୁଲନ୍ତି । କେହି ଯୁଦ୍ଧରେ ସ୍ୱପ୍ନ ଦେଖୁଥାଏ; କେହି ସ୍ୱଦେଶର
କୋମଳ ଆବେଷ୍ଟନୀ ପାଇଁ ଲୁହ ଗଡ଼ାଉଥାଏ । ଫ୍ଲରେନ୍ସ ସମସ୍ତଙ୍କ
ମୁହଁରେ ହାତ ବୁଲାଇ ଦିଅନ୍ତି, ମଧୁର କଥାରେ ସମସ୍ତଙ୍କୁ ଭୁଲାଇ
ଦିଅନ୍ତି । ଏକାବେଳକେ କିନ୍ତୁ ସମସ୍ତଙ୍କୁ କଥା କହିବା ସମ୍ଭବ ହୁଏ
ନାହିଁ । ସେ ଯେତେବେଳେ ଦୀପ ଧରି ଚାଲି ଯାଉଥାନ୍ତି, ସେତେ-
ବେଳେ କୃତଜ୍ଞ ସୈନ୍ୟମାନେ ତାଙ୍କ ଛାଇକୁ ଚୁମା ଦେଉଥାନ୍ତି ।
ଯେଉଁ ନାରୀର ଛାୟା ଚୁମ୍ବନ କରିବା ପାଇଁ ସହସ୍ର ଅନ୍ତର ଅନାଇ
ରହିଥିଲା, ତାଙ୍କ ନିକଟରେ ବ୍ରିଟିଶ ଯୁଦ୍ଧମନ୍ତ୍ରୀଙ୍କ ଅନୁରୋଧ ପତ୍ର କି
କ୍ଷୁଦ୍ର, କି ମୂଲ୍ୟହୀନ ।

ଖାଲି ଯେ ସେ ହସ୍ପିଟାଲରେ ହିଁ ଭଲ କାମ କରୁଥିଲେ
ତା ନୁହେଁ; ଦାରୁଣ ଯୁଦ୍ଧକ୍ଷେତ୍ରରେ ଗୁଳିଗୋଳାର ବର୍ଷା ଭିତରେ ବି

ଟେଣ୍ଟରେ ପଶି ସୈନ୍ୟମାନଙ୍କର ସେବା କରୁଥିଲେ । କାମ ଯେତେ ବେଳେ ବେଶୀ ଶକ୍ତିକୁ ବଳେଇଗଲା, ସେତେବେଳେ ସେ ଭୀଷଣ ଜ୍ୱରରେ ରୋଗାକ୍ରାନ୍ତ ହେଲେ; ମାତ୍ର ରୋଗମୁକ୍ତ ହୋଇ ପୁଣି କାମରେ ଲାଗିଲେ । ଡାକ୍ତରମାନଙ୍କର ଶତ ଅନୁରୋଧ ସତ୍ତ୍ୱେ ଘରକୁ ଫେରିବାକୁ ମନା କଲେ । ପାବସ୍ତ ସାଧନା ପାଇଁ ତୁମମାନଙ୍କ ଶୀତ କେତେ ମାତ୍ର ଅବା ?

କୁମାରୀଙ୍କର ସ୍ୱାର୍ଥତ୍ୟାଗ କାମ ଇଂଲଣ୍ଡରେ ତାଙ୍କ ପାଇଁ ଯେଉଁ କୃତଜ୍ଞତା ସୃଷ୍ଟି କରିଥିଲା, ତାର ନମୁନା ପାଇ ମହାରାଣୀ ଭିକ୍ଟୋରିଆଙ୍କର ଚିଠି ପଢ଼ନ୍ତୁ । ଆଉ କେହି ନୁହନ୍ତି, ବ୍ରିଟିଶ କେଶରିଣୀ ମହାରାଣୀ ଭିକ୍ଟୋରିଆ ନିଜେ ଲେଖିଛନ୍ତି—

ଉଇଣ୍ଡସର ଦୁର୍ଗ, ଜାନୁଆରୀ ୧୮୫୬

ପ୍ରିୟ କୁମାରୀ ନାଇଟିଙ୍ଗେଲ୍,

ରକ୍ତାକ୍ତ ଯୁଦ୍ଧ ଭିତରେ ତୁମେ ସେବା ତ୍ୟାଗର ଯେଉଁ ମହତ୍ ଆଦର୍ଶ ଦେଖାଇପାରିଛ, ସେଥିପାଇଁ ଏ ଜାତି ତୁମ ପାଖରେ କୃତଜ୍ଞ । ସେହି କୃତଜ୍ଞତାର ଚିହ୍ନ ସ୍ୱରୂପ ତୁମ ନିକଟକୁ ମୁଁ ଏହି ବ୍ରୁଚ୍ଟି ପଠାଉଛି । ତୁମେ ତାକୁ ତୁମ ରାଣୀଙ୍କର ଶ୍ରଦ୍ଧାଚିହ୍ନ ବୋଲି ମନେ କରି ପିନ୍ଧିବ । ମୁଁ ଅନାଇ ବସିଛି; ତୁମେ ଦେଶକୁ ଫେରି ଆସିଲେ ତୁମ ସହିତ ସାକ୍ଷାତ କରିବି, କାରଣ ତୁମେ ନାରୀଜାତିର ମହତ୍ ଆଦର୍ଶ ।

ତୁମର ବିଶ୍ୱସ୍ତ
ଭିକ୍ଟୋରିଆ

ସେବା ଯା'ର ଧର୍ମ, ସମ୍ମାନ ତା ନିକଟରେ କିଛି ନୁହେଁ । ଫ୍ଲରେନ୍‌ସଙ୍କ ଯେତେବେଳେ ଇଂଲଣ୍ଡକୁ ଫେରିବାର କଥା, ବିଜୟ ବାହୁଡ଼ା ପାଇଁ ତାଙ୍କୁ ସ୍ୱତନ୍ତ୍ର ଜାହାଜ ଯତ୍ନ ହୋଇଥିଲା; ମାତ୍ର ସେ ମନା କରିଦେଲେ । ଅଚିହ୍ନା ବେଶରେ ଲୁଚିକରି ସେ ଆସି ଇଂଲଣ୍ଡରେ ପହଞ୍ଚିଲେ । ଲୋକେ କହନ୍ତି, ତାଙ୍କ ଘରଠାରେ ଅନେକ ଲୋକ ତାଙ୍କୁ ଦେଖିବାକୁ ଜମିଥିଲେ । ଫ୍ଲରେନ୍‌ସ ବାଡ଼ିକବାଟ ବାଟେ ଘରେ ପଶିଲେ । ଖବରକାଗଜରେ ଚହଳ ପଡ଼ିଲା; କିନ୍ତୁ ଆଖିରେ କେହି ତାଙ୍କୁ ଦେଖିଲେ ନାହିଁ ।

୧୯୦୪ ମସିହାରେ ଭିକ୍ଟୋରିଆ ତାଙ୍କୁ ରେଡ୍‌କ୍ରସ୍ ଦେଲେ । ୧୯୦୭ ସେ ଅର୍ଡ଼ର ଅଫ୍ ମେରିଟ୍ ପୁରସ୍କାର ପାଇଲେ । ଏ ପର୍ଯ୍ୟନ୍ତ ଏକମାତ୍ର ବ୍ରିଟିଶ ରମଣୀ, ଯେ ସେହି ପୁରସ୍କାର ପାଇଛନ୍ତି । ତାଙ୍କ ପୁରସ୍କାର ଆମର ମନେ ନାହିଁ; କିନ୍ତୁ ଆଜି ଅର୍ଥଲୋଭୀ, ଡାକ୍ତର, ନର୍ସମାନଙ୍କୁ ଦେଖିଲେ ଫ୍ଲରେନ୍‌ସଙ୍କର କୋମଳ କାନ୍ତି ଆଖି ଆଗରେ ଭାସିଯାଏ । ନୈରାଶ୍ୟ ଅନ୍ଧକାରରେ ଆଶାର ଆଲୋକ ଉଜ୍ଜ୍ୱଳ ଉଠେ ।

---

## ପାଲଗଦାରେ ଚଢ଼ି ଯେ ପାରୁନ୍ତି ବକ୍ତୃତାଦିଏ ସେ ମିନିଟ୍କୁ ପାଞ୍ଚଟଙ୍କା ପାଏ

ମହାତ୍ମାଗାନ୍ଧି ଯେତେବେଳେ ବକ୍ତୃତା ଦଅନ୍ତି, ଲକ୍ଷ ଲକ୍ଷ ଲୋକ ସେତେବେଳେ କାନ ଡେରି ଶୁଣନ୍ତି; ମାତ୍ର ଗାନ୍ଧିଙ୍କ ପ୍ରଥମ ବକ୍ତୃତା କଥା ଜାଣନ୍ତି କି ? ସେ ବାରିଷ୍ଟର ହେବା ପରେ ଯେତେବେଳେ ପ୍ରଥମ ବକ୍ତୃତା ଦଅନ୍ତି, ତାଙ୍କ ଗୋଡ଼ ହାତ ଖାଲି ଥରିଲା, କେହରୁ ଶ୍ରମଝାଳ ବହିଗଲା । ବକ୍ତୃତା ଦେବା ଦୂରେ ଥାଉ, ଲେଖିବା କାଗଜଟା ବି ସେ ପଢ଼ି ପାରିଲେ ନାହିଁ ।

ଖାଲି ଗାନ୍ଧି ନୁହନ୍ତି, ଜଣାଶୁଣା ଲୋକଙ୍କ ଜୀବନରେ ଏହି କଥା ଘଟିଛି । ବିଲାତରେ ଜଣେ ପ୍ରଧାନ ମନ୍ତ୍ରୀ ଡିଜ୍‌ରେଲି ପାର୍ଲିଆମେଣ୍ଟରେ ଯେତେବେଳେ ବକ୍ତୃତା ଦେବାକୁ ବାହାରିଲେ ଉଠି ବସିବା ଖାଲି ମାତ୍ର ସାର ହେଲା, ପାଟି ଫିଟିଲା ନାହିଁ । ଲର୍ଡ଼ ଜର୍ଜଙ୍କ ଅବସ୍ଥା ବି ସେଇୟା, ବକ୍ତୃତା ଦେବାକୁ ବାହାରିଲା ବେଳକୁ ଜିଭ ଶୁଖି ପାଟି ଅଠା ହୋଇଗଲା । ଲୋକଙ୍କ ଆଗରେ ଠିଆ ହେବା କେଡ଼େ କଠିନ; ନଜେ ଠିଆ ନ ହେଲେ ବୁଝିହେବ ନାହିଁ । ଗୋଡ଼ରେ ଠିଆ ହେବାମାତ୍ରେ ମୁଣ୍ଡଟା ମଣିଷର ବୁଲାଇ ଦିଏ ।

ଯାହାର ଯୋଗ୍ୟତା ଅଛି, ସେ ବକ୍ତୃତା ଦେବା ସହଜ । ମାତ୍ର ଯାହାର ଯୋଗ୍ୟତା ନାହିଁ, ତାକୁ ମଞ୍ଚରେ ଛିଡ଼ା କରାଇ ବକ୍ତୃତା ଦିଆଇବା ଭାରି କଠିନ । କିନ୍ତୁ ଡେଲକାନେଗି ତାଙ୍କ

ଜୀବନର କେତେକ ବର୍ଷ ଭିତରେ ପନ୍ଦର ହଜାରରୁ ଅଧିକ ଲୋକଙ୍କୁ କଥା କହିବାରେ ତାଲିମ୍ ଦେଇସାରିଲେଣି । ଆମେରିକାର ହାର୍ଭାର୍ଡ଼ ଓ କଲମ୍ବିଆ ଭଳିଆ ବିଶ୍ୱବିଦ୍ୟାଳୟରୁ ଯେତକ ଗୁଡ଼ ବକ୍ତୃତା ଶିକ୍ଷା ପାଆନ୍ତି, ତାଠୁ ବେଶି ସଂଖ୍ୟାରେ ଶିକ୍ଷା ପାଆନ୍ତି ଡେଲକାର୍ନେଗିଙ୍କଠାରୁ । ବକ୍ତୃତା ଶିକ୍ଷା ଦେବା ସମ୍ପର୍କରେ ସେ ଏକ ଲକ୍ଷ ପଚିଶ ହଜାର ବକ୍ତୃତା ଶୁଣି ସେଗୁଡ଼ିକର ସମାଲୋଚନା କରିଛନ୍ତି । କଥା କେତେ ବଡ଼ ସେ ବୁଝି ହେଉନାହିଁ, ତେବେ ଗୋଟାଏ ଦୁଇଟା ଉଦାହରଣ ଦେଇ ବୁଝାଇଦେଲେ ବୁଝିପିବେ ନିଶ୍ଚୟ । ମନେଅଛି, କଲମ୍ବସ୍ କେବେ ଆମେରିକା ଆବିଷ୍କାର କରିଥିଲେ ? କାର୍ନେଗି ଯେତେ ବକ୍ତୃତା ବିଚାର କରିଛନ୍ତି, ଯଦି ଦିନକୁ ଗୋଟିଏ ଲେଖାଏଁ ବକ୍ତୃତା ଦିଆଯାଇଥାନ୍ତା, ତେବେ ସେଦିନ ଠାରୁ ଆଜଯାଏ ବକ୍ତୃତା ଦିଆ ଚାଲିଥାନ୍ତା କିମ୍ବା ଯଦି ବକ୍ତାମାନେ ଜଣକା ତିନ ମିନଟ୍ ଲେଖାଏଁ କହିଥାନ୍ତେ, ତେବେ ଦିନରାତି ସବୁ-ବେଳେ ଶୁଣି ଏ ସବୁ ବକ୍ତୃତା ଶୁଣିବା ପାଇଁ ପୂରା ଏକ ବର୍ଷ ଲାଗିଥାନ୍ତା ।

ଏହି ଡେଲ୍ କାର୍ନେଗିଙ୍କ ପିଲାଦିନ କଥା ଶୁଣିଲେ ଅବାକ୍ ହେବାର କଥା । ତାଙ୍କୁ ବାରବର୍ଷ ହେବାଯାଏ ବି ସେ ରେଳଗାଡ଼ି ଦେଖି ନ ଥିଲେ; କିନ୍ତୁ ତାଙ୍କୁ ପଚାଳିଶ ବର୍ଷ ବେଳକୁ ପୃଥିବୀର ଏମିତି ଜାଗା ନାହିଁ; ଯେଉଁଠି ଲୋକେ ତାଙ୍କ କଥା ନ ଶୁଣିଛନ୍ତି । ମାଲଦ୍ୱିପରୁ ମେକ୍‌ସିକୋ, ଲଙ୍କାରୁ ଅଯୋଧ୍ୟା ସବୁଠି ତାଙ୍କ ନା । ଆମେରିକାର ମିସୋରି ଷ୍ଟେଟ୍‌ର ଗୋଟିଏ କୃଷିଫାର୍ମରେ ତାଙ୍କ ଘର । ବାପ ମା' ତାଙ୍କର ଭାରି ଗରିବ । କାର୍ନେଗି ପିଲାଦିନେ କୋଳ ତୋଳ ଦିନକୁ ପାଞ୍ଚ ଟଙ୍କା ପଇସା ପାଉଥିଲେ; ଏବେ

ମିନଟକୁ ପାଞ୍ଚଟଙ୍କା ପାଆନ୍ତି । ତାଙ୍କର ଖଣ୍ଡେ ବହିରେ (ହାଉ ଟୁ ଓ୍ୱିନ୍ ଫ୍ରେଣ୍ଡସ୍ ଆଣ୍ଡ ଇନ୍‌ଫ୍ଲୁଏନସ ପିପଲ ) କେମିତି ବନ୍ଧୁତା କରିବାକୁ ହୁଏ, କେମିତି ପରକୁ ଆପଣାର କରି ହୁଏ, ଲେଖାଅଛନ୍ତି । କେବଳ ଏହି ବହି ୩୫ ଲକ୍ଷ ଖଣ୍ଡ ବିକ୍ରୀ ହୋଇଛି । ପ୍ରତ୍ୟେକ ବହିର ଦାମ୍ ଦୁ'ଟଙ୍କା ଧରିଗଲେ କେତେଟଙ୍କା ହେଲା, ହିସାବ କରନ୍ତୁ । ତା ଛଡ଼ା ତାଙ୍କର ଅନ୍ୟାନ୍ୟ ଅନେକ ବହି ଅଛି ।

ଡେଲ କାର୍ନେଗି ଯେତେବେଳେ ପିଲା; ତାଙ୍କର ଘର ଉପରେ ବାରମ୍ବାର ବିପତ୍ତି ପଡ଼ୁଥାଏ । ଯେତେ ଚେଷ୍ଟା କଲେ ବି ଜମିରେ ଫସଲ ଉଠିଆ ହେଉ ନ ଥାଏ । ବରଷା ହେଉ, ବରଫ ହେଉ; ଯନ୍ତିଁରେ ହେଲେ ଫସଲ ନଷ୍ଟ ହୋଇ ଯାଉଥାଏ । ଟାଉନରେ ରହି ପାଠ ପଢ଼ିବା ପାଇଁ ତାଙ୍କର ଯଥେଷ୍ଟ ପଇସା ନ ଥିଲା; ତେଣୁ ପ୍ରତିଦିନ ଗୋଟିଏ ଧଡ଼ିଆ ଘୋଡ଼ାରେ ଚଢ଼ି ସେ ପାଠ ପଢ଼ିବା ପାଇଁ ତିନମାଇଲ ଯାଆନ୍ତି ଓ ଆସନ୍ତି । ସେଠୁ ପାସ୍ କରି ଦୁରକୁ ଆଉ ଗୋଟାଏ ଜାଗାକୁ ଯିବାକୁ ତାଙ୍କର ପଇସା ନ ଥିଲା । ତେଣୁ ମାଲଗାଡ଼ିରେ ବୁଢ଼ା ହୋଇଥିବା ଘୋଡ଼ାମାନଙ୍କର ସେବା କରି, ପାଣି ପିଆଇ, ମଇଳା ପୋଛି ମାଲଗାଡ଼ିରେ ଟିକଟ୍ ଖଣ୍ଡେ ପାଇ ସେ ଗୋଟିଏ ବଡ଼ ସହରକୁ ଯାଇ ବି. ଏ. ପଢ଼ି ପାସ୍ କଲେ ।

କଲେଜରେ ପାଠ ପଢ଼ିଲାବେଳେ ତାଙ୍କ ପାଟି ଫିଟୁ ନଥିଲା । ସେ ଦେଖିଲେ, ଦଶ ବାର ଜଣଙ୍କର କଲେଜରେ ଖ୍ୟାତି ନାଁ । କିଏ ଭଲ ଖେଳୁଛି ତ କିଏ ଭଲ ବକ୍ତୃତା ଝାଡ଼ୁଛି । କାର୍ନେଗିଙ୍କର ଖାଲି ଇଚ୍ଛା ହେଲା ବଡ଼ ହେବା ପାଇଁ; କିନ୍ତୁ କଣ କରିବେ,

ଖେଳ ତ ଆସେ ନାହିଁ । ତେଣୁ କେମିତି ସେ ବକ୍ତୃତା ଦେବେ, ସେଇଥିରେ ଲାଗିପଡ଼ିଲେ । ଯାହା କହନ୍ତୁ, ପାଳଗଦାରେ ଚଢ଼ି ବଡ଼ ଲୋକ ହେବା କଥା । ଡେଲ୍ କାନେଗିଙ୍କ ଜୀବନରେ ସତରେ ତାହା ଘଟିଥିଲା । ସେ ଘରକୁ ଆସି ପାଳଗଦାରେ ଚଢ଼ି ସେଠି ଚରୁଥିବା ଗାଈମାନଙ୍କୁ ବକ୍ତୃତା ଦିଅନ୍ତି । ଗାଈ ବୁଝନ୍ତୁ କି ନ ବୁଝନ୍ତୁ, ତାଙ୍କ ନିଜ କାମ ହାସଲ ହୋଇଯାଏ । କିନ୍ତୁ ସେସବୁ ସତ୍ତ୍ୱେ କଲେଜ ବକ୍ତୃତା ପ୍ରତିଯୋଗିତାରେ ସେ ଜିତି ପାରିଲେ ନାହିଁ । ମନ କଷ୍ଟରେ ପଳାଇ ଯାଇ ପିକାଡ଼ କମ୍ପାନୀରେ ଟ୍ରକ୍ ବିକାକିଣା କରିବା ପାଇଁ କଗଣୀ ହେଲେ ।

ଯେଉଁ କାନେଗିଙ୍କ ଭାବପ୍ରବଣ ମନଟା ମେସିନ୍ ଦେହରେ ଲାଗିଲା ନାହିଁ । ମଟର ଟ୍ରକ୍ ବିକାକିଣା ଛାଡ଼ି ସେ ପଳାଇ ଆସିଲେ । ଭାବିଲେ ଲେଖକ ହେବେ, ଲେଖିବେ । ସେଥିରେ ସେ ଜୀବନର ସ୍ୱାଦ ପାଇବେ, ତାଙ୍କ ଜୀବନ-ସ୍ୱପ୍ନ ସଫଳ ହେବ । ରାତ୍ର ସ୍କୁଲରେ ପାଠ ପଢ଼ାଇବେ । ମାତ୍ର ପଢ଼ାଇବେ କଣ ? ନିଜେ ଯେ ମୂକ, ସେ ଅନ୍ୟକୁ ମୁଖର କରିବ କେମିତି ? ତଥାପି ବହୁଧୈର୍ଯ୍ୟ-ଧରି ଛାତ୍ରମାନଙ୍କୁ ବକ୍ତୃତା ଦିଆ ଶିଖାଇଲେ । ଆଜି ଯେ ମିନିଟକୁ ପାଞ୍ଚ ଟଙ୍କା ପାଉଛନ୍ତି, ସେତେବେଳେ ସେ ଦିନକୁ ମୋଟେ ଦଶ ଟଙ୍କା ପାଉଥିଲେ । କିନ୍ତୁ କାଳକ୍ରମେ ସେ ଏମିତି ଦକ୍ଷ ହୋଇ ଉଠିଲେ ଯେ, ତାଙ୍କ ନାମ ଆମେରିକା ଠାରୁ ଲଣ୍ଡନ, ପାରିସ୍ ପର୍ଯ୍ୟନ୍ତ ବି ବଢ଼ିଗଲା । ତାଙ୍କ ବହି (ପବ୍ଲିକ୍ ସ୍ପିକିଂ ଆଣ୍ଡ୍ ଇନଫ୍ଲୁ-ଏନସିଂ ମେନ୍ ଇନ୍ ବିଜିନେସ୍ ) ବର୍ତ୍ତମାନ ସବୁ ଆମେରିକାନ୍ ବ୍ୟାଙ୍କ୍ ଓ ବ୍ୟବସାୟ କ୍ଷେତ୍ରରେ ପାଠ୍ୟପୁସ୍ତକ ହୋଇ ପଢ଼ା ହେଉଛି ।

ଡେଲ୍ କାର୍ନେଗି କହନ୍ତି, ଶିକ୍ଷା ପାଇଲେ ଯେ କୌଣସି ଶୁଆ କଥା କହିବ । ଅସଲ ଶିକ୍ଷା ପାଇଲେ ହେଲା । ଆଘାତ ପାଇଲେ ଯେ କୌଣସି ଲୋକ ବକ୍ତୃତା ଦେଇପାରେ । ରାସ୍ତାରେ ଯେ କୌଣସି ଲୋକକୁ ଚାପୁଡ଼ାଏ ଦେଲେ ସେ ରାଗରେ ପ୍ରତିବାଦ କରି ମଧ୍ୟ ବକ୍ତୃତା ଦେଇପାରେ । ନିଜଠାରେ ବିଶ୍ୱାସ ଥିଲେ ଯେ କୌଣସି ଲୋକ ଛିଡ଼ା ହୋଇ ବକ୍ତୃତା ଦେଇ ପାରିବ । ଯେଉଁ କଥାକୁ ମଣିଷ ଡରେ, ଯଦି ସେହି କଥା କରିବା ପାଇଁ ଚେଷ୍ଟା କରେ ଓ ପ୍ରତ୍ୟେକ ଚେଷ୍ଟାର ଫଳ କଣ ହେଉଛି ଲେଖି ବସ୍ତବଲ ଦେଖୁଥାଏ, ତେବେ ଆପେ ଅନେକ ସାହସ ବଢ଼ି ଯାଏ । ଆତ୍ମବିଶ୍ୱାସ ନ ଥିଲେ ମଣିଷ ଦୁନିଆରେ କେଉଁଠି ହେଲେ ଛିଡ଼ା ହୋଇ ପାରିବ ନାହିଁ । କାର୍ନେଗି ଅନେକ ସାଧନା ପରେ ସେହି ଆତ୍ମବିଶ୍ୱାସ ପାଇଥିଲେ ।

ଡେଲ୍ କାର୍ନେଗି ଅନୁଷ୍ଠାନରେ କେବଳ ବକ୍ତୃତା ଶିକ୍ଷା ଦିଆଯାଏ ନାହିଁ, ଲୋକସମ୍ପର୍କ ମନସ୍ତତ୍ତ୍ୱ, ବ୍ୟବସାୟ କୌଶଳ ମଧ୍ୟ ଶିକ୍ଷା ଦିଆଯାଏ । ସେ ଅନୁଷ୍ଠାନକୁ ଯେ ମୂକ ହୋଇଯାଏ, ସେ ମୁଖର ହୋଇ ଫେରେ; ଯା'ର ଭାଷା ନ ଥାଏ, ସେ ପୁଣି ଭାଷଣ ଦିଏ ।

ଡେଲ୍ କାର୍ନେଗି ଭଲ ବହି ଆଠ ଖଣ୍ଡ ଲେଖିଛନ୍ତି । ତାଙ୍କ ଲେଖିବାର ପ୍ରଣାଳୀ ଭାରି ଚମତ୍କାର । ତାଙ୍କର ଏମିତି ବହି ନାହିଁ, ଯାହା ଜଣେ ଏକା ନିଶ୍ୱାସରେ ନ ପଢ଼ିବ, ଏମିତି ବହି ନାହିଁ ଯହିଁରେ ମଣିଷ ମନର ସରସ ସନ୍ଧାନ ନ ମିଳିବ । ଅନେକଙ୍କ ପକ୍ଷରେ ତାଙ୍କ ବହି ମ୍ୟାଜିକ ପରି କାମ କରେ । ତାଙ୍କ

ସଙ୍ଗେ ବ୍ୟକ୍ତିଗତ ସମ୍ପର୍କ ଇଚ୍ଛା କଲେ ଏବେ ନିମ୍ନ ଠିକଣାରେ ଚିଠି ଲେଖନ୍ତୁ—

ଡେଲ୍ କାର୍ନେଗି, ଡ଼. ସି. ଏସ୍., ଡ଼. ପିଡ଼.,

ଏଫ୍. ଆର୍. ଜି. ଏସ୍, ଲିଟ୍. ଡ଼.

ପ୍ରେସିଡେଣ୍ଟ, ଡେଲ କାର୍ନେଗି ଅନୁଷ୍ଠାନ

୫୦ ପୂର୍ବ, ୪୨ ନମ୍ବର ଷ୍ଟ୍ରୀଟ୍, ନ୍ୟୁୟର୍କ ସହର ।

---

# ଯୁଗଜ୍ୟୋତି ଜବାହର

ପୃଥିବୀ-ସଭ୍ୟତାର ସନ୍ଧି ସମୟ । ଆଫ୍ରିକା ଅନ୍ଧକାରରେ ଗାନ୍ଧିଙ୍କର ଲଢ଼େଇ ଲାଗିଥାଏ । ସେତେବେଳକୁ ସେ ମହାତ୍ମା ହୋଇ ନ ଥାନ୍ତି, ଖାଲି ବଳିଷ୍ଠ ବାରିଷ୍ଟର ମୋହନଦାସ କରମଚାନ୍ଦ ଗାନ୍ଧି । ଭାରତରେ ଠିକ୍ ସେତିକିବେଳେ ରବୀନ୍ଦ୍ର ସଙ୍ଗୀତର ଧାରା ଛୁଟିଥାଏ । ସେ ବି କବୀନ୍ଦ୍ର ହୋଇ ନ ଥାନ୍ତି, ଖାଲି ରବୀନ୍ଦ୍ର । ଗାନ୍ଧି ଓ ଗୁରୁଦେବ ଯେତେବେଳେ ଜୀବନ ଆରମ୍ଭ କରୁଥାନ୍ତି, ସେତିକିବେଳେ ଏ ଦେଶର ଭାଗ୍ୟବିଧାତା ନେହେରୁଙ୍କର ଆଖି ଫିଟୁଥାଏ । ସେ ସ୍କୁଲକୁ ଯାଉଥାନ୍ତି । ବିଲାତି ପୋଷାକ, ବିଲାତି ଚାଲି, ଇଂରେଜୀଯାନ ସ୍କୁଲ, ବିଲାତି ଶିକ୍ଷକ । ଭାରତର ଗନ୍ଧ ପର୍ଯ୍ୟନ୍ତ ନାହିଁ । ଯଦି ନେହେରୁଙ୍କର ପିଲାଦିନର ଛବି ନ ଥିଲେ ଆଜି ବିଶ୍ୱାସ କରି ହୁଅନ୍ତା ନାହିଁ, ସେ କେମିତି ଏତେ ବଦଳିଛନ୍ତି, ଖଦୀ ପିନ୍ଧି ଭାରତର ଖେଦ ବୁଝି ପାରିଛନ୍ତି, ଆନନ୍ଦଭବନକୁ ଛାଡ଼ି ବନ୍ଦୀ ଜୀବନର ବ୍ୟଥା ସହିଛନ୍ତି । ଆଲ୍ଲାହାବାଦ ସହରରେ କେହି ପାଦ ପଡ଼ିଲେ ଆନନ୍ଦଭବନରେ ଆଖି ପକାଇବାକୁ ଭୁଲିବେ ନାହିଁ । ସେଇଠି ଜନ୍ମ ହୋଇଥିଲେ ଯୁଗଜ୍ୟୋତି ଜବାହରଲାଲ—ଧନୀ ପିତା ମୋତିଲାଲଙ୍କର ଏକମାତ୍ର ପୁତ୍ର, କୋଟି ଜନତାର ଏକମାତ୍ର ପିତା, ରକ୍ଷକ, ଶାସକ, ଯାହା କହ; କିନ୍ତୁ ସେହି ସମ୍ଭୋଗ ମନ୍ଦିରକୁ ସାଧନା ଶିବିର କରିବା ପାଇଁ ମୋତିଲାଲ୍ ତାହା କଂଗ୍ରେସ ଲୋକଙ୍କୁ ଦାନ କରି ଦେଇଥିଲେ । ଲୋକେ ଆଜି ତାକୁ 'ସ୍ୱରାଜ ଭବନ' ବୋଲି କହନ୍ତି ।

ଭାରତର ପ୍ରଧାନମନ୍ତ୍ରୀ ଜବାହରଙ୍କୁ ଲୋକେ ଖାଲି 'ନେହେରୁ' ନାମରେ ଜାଣନ୍ତି । ନେହେରୁଙ୍କ ପ୍ରତି ଭାରତୀୟମାନଙ୍କର ଆନ୍ତରିକତା ଦେଖି ପୃଥିବୀ ନେତାମାନେ ଅହଂକାର କରନ୍ତି । ଆଟେଲି, ଟ୍ରୁମାନ୍ ସମ୍ମାନ କରନ୍ତି, ଭୟ ବି କରନ୍ତି । କାରଣ ନେହେରୁ କେବଳ ଭାରତର ନେତା ନୁହନ୍ତି, ସାରା ପୂର୍ବ ଜଗତର ଅପ୍ରତିଦ୍ୱନ୍ଦୀ ନାୟକ । ପାରସ୍ୟ ତୈଳବିବାଦ ହେଉ, ଇଜିପ୍ଟ ସୁଏଜ କଥା ହେଉ, ମାଳୟର କମ୍ୟୁନିଷ୍ଟ କଳହ ହେଉ; ସବୁ କଥାର ଚାବି ନେହେରୁଙ୍କ ହାତରେ ଅଛି ବୋଲି ସମଗ୍ର ପାଶ୍ଚାତ୍ୟ ଜଗତ ବିଶ୍ୱାସ କରେ । ସେ ବିଶ୍ୱାସ ବି ଠିକ୍ । ରାଜଗୋପାଳାଚାରୀ କହନ୍ତି, "ରାମଙ୍କ ପାଖରେ ଲକ୍ଷ୍ମଣ ଯାହା, ଗାନ୍ଧିଙ୍କ ପାଖରେ ନେହେରୁ ତାହା ।" ଗାନ୍ଧି କହନ୍ତି, "ତାଙ୍କ ମୃତ୍ୟୁ ପରେ ନେହେରୁ କେବଳ ଏ ବିଶ୍ୱକୁ ତାଙ୍କର ବାଣୀ ଶୁଣାଇ ପାରିବେ ।" ଅପ୍‌ଟନ୍‌ସିନ୍‌କ୍ଲେଅର କହନ୍ତି, "ନେହେରୁ ଭାରି କାମିକା ।" ଆମେ କହୁ, ସେ କଥା ଓ କାମ ଉଭୟର ମାଲିକ । ପାଠ ତାଙ୍କର ବିଜ୍ଞାନ ଚିନ୍ତା ମାତ୍ର ଦର୍ଶନ । ସେ ଖାଲି ଇତିହାସର ଖେଳ ନୁହନ୍ତି, ଇତିହାସର ସ୍ରଷ୍ଟା ।

ଗାନ୍ଧିଙ୍କର କୋଡ଼ିଏ ବର୍ଷ ପରେ ଓ ସରୋଜନୀ ନାଇଡୁଙ୍କର ଦଶବର୍ଷ ପରେ ସେ ଜନ୍ମ ହୋଇଥିଲେ । ୧୯୦୫ ମସିହାରେ ଷୋଳବର୍ଷ ବୟସରେ ସେ ବିଲାତ ଗଲେ । ସେଠି ହାରୋ ସ୍କୁଲରେ ପଢ଼ିଲେ । ମଜାର କଥା; ସେହି ସ୍କୁଲରେ ପଢ଼ିଥିଲେ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍, ରାଜନୀତିଜ୍ଞ ଆମେରି, ବମ୍ବେର ରାଜ୍ୟପାଳ ମହାରାଜା ସିଂହ । ସ୍କୁଲ ପରେ କେମ୍ବ୍ରିଜ୍ ଟ୍ରିନିଟି କଲେଜରେ ପଢ଼ି ସେ ଦ୍ୱିତୀୟ ଶ୍ରେଣୀ ଅନର୍ସ ନେଇ ପାସ୍ କଲେ । ତାଙ୍କ ପଠିତବ୍ୟ

ତାଙ୍କ ବକ୍ତୃତା, ତାଙ୍କ ଇତିହାସ ପଢ଼ିଲେ ଆଦୌ ଧାରଣା ହେବ ନାହିଁ ଯେ ସେ ଖାଲି ପ୍ରାଣୀ ବିଜ୍ଞାନ ବା ଉଦ୍ଭିଦବିଜ୍ଞାନ ପଢ଼ୁଥିଲେ ବୋଲି । ତାଙ୍କ ସହପାଠୀମାନେ କହନ୍ତି, କଲେଜ ଲାଇବ୍ରେରୀରେ ସେ ନୂତନ ପ୍ରଗତିଶୀଳ ବହୁ ଲେଖକଙ୍କର ଲେଖା ପଢ଼ିଥିଲେ; କିନ୍ତୁ ଏ କଥା ସତ ଯେ ସାଧାରଣ ଛାତ୍ରଙ୍କ ଅପେକ୍ଷା ତାଙ୍କର ବିଶେଷ କୌଣସି ସ୍ୱତନ୍ତ୍ର ନ ଥିଲା । ଭାରତୀୟ ଛାତ୍ରମାନଙ୍କର କେମ୍ବ୍ରିଜ୍ ଯେଉଁ ମଜଲିସ ଅନୁଷ୍ଠାନ ଥିଲା, ନେହେରୁ ସେଠି ବକ୍ତୃତାରେ ପାଟି ଫିଟାଇବାର ସାହସ କରି ନ ଥିଲେ । ସେ ଯାହା ଲାଜକୁଳା;ମାତ୍ର କିଏ ଜାଣିଥିଲା ପାଉଁଶ ତଳେ ନିଆଁ ଅଛି । ଭାରତର ସ୍ୱାଧୀନତା-ସଂଗ୍ରାମରେ ସହଯୋଗୀ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ସେ ଯେଉଁ ଜବାବ ଦେଇଛନ୍ତି, ତାହା କେତେ ଜଣଙ୍କ ପକ୍ଷରେ ସମ୍ଭବ ହୁଏ ? ଗଲା ନିର୍ବାଚନରେ ସେ ଦେଶରେ ବେଳେ ବେଳେ ଦିନକେ କୋଡ଼ିଏ ବକ୍ତୃତା ଦେଇଛନ୍ତି, ଛଅ ମାସରେ ଏକଲକ୍ଷ ମାଇଲ ବୁଲିଛନ୍ତି । କେମ୍ବ୍ରିଜର ଲଜ୍ଜାଶୀଳ ବାଳକ ଆଜି ପ୍ରାଚ୍ୟ ପୃଥିବୀର ଆଗ୍ନେୟଗିରି—କି ପରିବର୍ତ୍ତନ ।

ହାରୋର ସେହାରୁ ସାତବର୍ଷ ଯାଏଁ ଫେରିବା ପରେ ସାହେବ ହେବା ପାଇଁ ନେହେରୁଙ୍କର କଣ ବାକି ଥିଲା ? ପିଲାଦିନୁ ତ ସାହେବୀ ସ୍କୁଲରେ ସାହେବ ମାଷ୍ଟର ପାଖରେ ପାଠ ପଢ଼ୁଥିଲେ । ସହଜେ ତ ବିଲାତରେ ସାତବର୍ଷ ରହି ଫେରିଥିଲେ । ଯା' ବାପ ଚଢ଼େ ଘୋଡ଼ା, ତା ପୁଅ ଖୋଡ଼ା ଖୋଡ଼ା, ନ୍ୟାୟରେ ସେ ଆଲ୍ଲାହାବାଦ ହାଇକୋର୍ଟରେ ବାପାଙ୍କ ପାଖରେ ଓକିଲାତି ଶିଖିଲେ । ବାପା ତାଙ୍କର ବି. ଏ., ଏମ୍. ଏ., ପଢ଼ି ନ ଥିଲେ; କିନ୍ତୁ ଭାରି ବିଚକ୍ଷଣ ଓକିଲ ଥିଲେ । ଆଲ୍ଲାହାବାଦରେ ମୋତିଲାଲ,

କଲକତାରେ ଦେଶବନ୍ଧୁ ଚିତ୍ତରଞ୍ଜନ, ଦୁହିଙ୍କର ଘର ନାଁ । ଭାରତର ଦୁର୍ଭାଗ୍ୟକୁ ସେତେବେଳେ ଧନୀ ଲୋକଙ୍କ ଘରେ ଭାରତୀୟ ଆଭିଜାତ୍ୟର ସମ୍ପୂର୍ଣ୍ଣ ଲୋପ ପାଇଥାଏ । ସାହେବୀ ଢଙ୍ଗ ଖୁବ୍ ଜୋର ଚାଲିଥାଏ । ମୋତିଲାଲଙ୍କ ଭଳି ଧନକୁବେର ବାରିଷ୍ଟର ଓକିଲଙ୍କ ଘରେ ସବୁ ସାହେବୀଙ୍କ ଆଡ୍ଡା—ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ନେହେରୁଙ୍କର ବୈବାହିକ ଜୀବନ ଅତି କରୁଣ । ୧୯୧୬ ମସିହାରେ ଦିଲ୍ଲୀଠାରେ କମଳା ଦେବୀଙ୍କ ସଙ୍ଗେ ତାଙ୍କର ବାହାଘର ହୋଇଥିଲା । ବିବାହ ପରେ ସେମାନେ ନିଜ ପୈତୃକ କାଶ୍ମୀରକୁ ଯାଇଥିଲେ, ଯେଉଁଠି ଯୁଗେ ଯୁଗେ ନବ ଓ କୁସୁମ ଫୁଟି ଉଠନ୍ତି, ଯେଉଁଠି ଭାରତ ଦେହରେ ସ୍ୱପ୍ନ ସୌନ୍ଦର୍ଯ୍ୟ ଆତ୍ମପ୍ରକାଶ କରେ । କିନ୍ତୁ କମଳା ବୋଧହୁଏ ଭାଗ୍ୟବତୀ ନୁହନ୍ତି । ବୈବାହିକ ଜୀବନର ଅଖଣ୍ଡ ସମ୍ଭୋଗ ତାଙ୍କୁ ମିଳିଲା ନାହିଁ । ଗାନ୍ଧିଜୀଙ୍କ ସହିତ ପରିଚିତ ହେବା ମାତ୍ରେ ଜବାହର ଜୀବନରେ ଜୁଆର ଲାଗିଲା । ସେ ହେଲେ ଗାନ୍ଧିଙ୍କର ଦକ୍ଷିଣ ହସ୍ତ । ଜେଲ ଯିବା ତାଙ୍କ ପକ୍ଷରେ ଅତି ସାମାନ୍ୟ କଥା । ରାଜନୀତିରେ ପଶିଲାଦିନୁ ଛ'ମାସରୁ ଅଧିକ କେବେ ସେ ଘରେ ରହିପାରି ନାହାନ୍ତି । ଖାଲି ହାତକଡ଼ି, ଖାଲି ଜେଲ ! ମନେ ରଖନ୍ତୁ; ସେ ଧନ କୁବେର ମୋତିଲାଲଙ୍କ ପୁଅ । କଳ୍ପିତ ଜୀବନର ଆବହାଓ୍ୱା, ଆନନ୍ଦଭବନର ସୁଖସମ୍ଭୋଗ, ସବୁ ତାଙ୍କ ନିକଟରେ ତୁଚ୍ଛ ହୋଇଗଲା । ଜେଲରେ ରହିବା ସମୟରେ କମଳା ରୋଗଗ୍ରସ୍ତ ହୋଇପଡ଼ିଲେ । ଦିନ ପରେ ଦିନ କମଳାଙ୍କର କୋମଳ ଅଙ୍ଗକ୍ଷୀଣ ହେବାକୁ ଲାଗିଲା । ଚିକିତ୍ସା ପାଇଁ ସ୍ୱାମୀଙ୍କ ସଙ୍ଗେ ସେ ସୁଇଜରଲାଣ୍ଡ ଗଲେ । ଦେଶର ଡାକ ପାଇ ନେହେରୁ

କମଳାଙ୍କୁ ଛାଡ଼ି ଭାରତକୁ ଫେରୁଥିବାବେଳେ ବାଟରେ ତାଙ୍କୁ ଦାରୁଣ ଦୁଃସମ୍ବାଦ ମିଳିଲା, "କମଳା ଆଉ ନାହାନ୍ତି" । ଯାଇଥିଲା କାଞ୍ଚନ, ଏବେ ଗଲା କାମିନୀ । ଅନାସକ୍ତ ସାଧନାରେ ସମସ୍ତ ବାଧା ଆପେ ଅପସରିଗଲା । କମଳା ଦେଇଗଲେ ଏକମାତ୍ର କନ୍ୟା-ପାରିଜାତ ଇନ୍ଦିରାପ୍ରିୟଦର୍ଶୀ ।

ବ୍ରିଟିଶ ଶାସନରେ ସାପମୁଣ୍ଡ ଛୁଣ୍ଡି ଯାଉଥାଏ । ସେ କାଳର ଜେଲ ଖୁବ୍ କଠିନ । ୧୯୨୧ରେ ନେହେରୁ ଯେତେବେଳେ ପ୍ରଥମେ ଜେଲ ଯାଆନ୍ତି, ଗାନ୍ଧି ମୋତିଲାଲଙ୍କୁ ଲେଖିଲେ; "ପ୍ରିୟ ମୋତି-ଲାଲ୍‌ଜୀ, ଜବାହରଙ୍କୁ ଛଅମାସ ବିଶ୍ରାମ ମିଳିଛି............ ।" ବିଲାତ ଫେରନ୍ତା କୁବେରପୁତ୍ର ବାରିଷ୍ଟରଙ୍କ ପାଇଁ ଜେଲଦଣ୍ଡ ପୁଣି ବିଶ୍ରାମ ! ଜବାହରଙ୍କ ଦେହରେ କଏଦୀଙ୍କର କାଠ ଟିକଟ, ମୁହଁରେ ବରଗଡ଼ା ଭାତ ଡାଲି । ଯାହା କହନ୍ତୁ, "ଯାହାକୁ ନ ଛୁଟେ ବର୍ଷଶାଳି ଅନ୍ନ"...ସେ ପୁଣି ! ମୋତିଲାଲ୍ ଅଥୟ ହୋଇପଡ଼ନ୍ତି; କିନ୍ତୁ ଜବାହର ଭାବନ୍ତେ କାହିଁକି ? ଦେଶପ୍ରେମରେ ତ ଜାଣି ଜାଣି ସେ କାଞ୍ଚନ, କମଳା, ସବୁ ଆହୁତି ଦେଇଛନ୍ତି !

ଜବାହର-ଜୀବନ ଅନେକଙ୍କୁ ଅତି ବିଚିତ୍ର ମନେ ହୁଏ । ସେ ସ୍ୱପ୍ନବାଦୀ, ଆଦର୍ଶବାଦୀ, ଅଥଚ ବ୍ୟାବହାରିକ ଜ୍ଞାନ ତାଙ୍କର ଅତି ତୀବ୍ର । ଷୋଳ ବର୍ଷ ବୟସରେ ସେ ଯେତେବେଳେ ବିଲାତରେ ପହଞ୍ଚିଲେ ସେକାଳ ବିଲାତର କ୍ୟାମ୍ପବେଲ ମନ୍ତ୍ରିମଣ୍ଡଳର ପ୍ରତ୍ୟେକ ମନ୍ତ୍ରୀଙ୍କ ନାଁ ତାଙ୍କ କଣ୍ଠରେ ଥିଲା । ହୁଏତ ଜଣେ ଇଂରେଜ ଲୋକ ବି ସବୁ ମନେ ନ ରଖି ପାରୁଥାନ୍ତି । ସବୁ ଓଡ଼ିଆ ମନ୍ତ୍ରୀଙ୍କ ନାମ ଜାଣିବା ଲୋକ ମଧ୍ୟ ଆମ ଭିତରେ କମ୍ ଥିବେ । ଆକାଶୀ

ଚିନ୍ତାରେ ମନ ତାଙ୍କର ସବୁବେଳେ ଭରିଯାଏ । ଭଡ଼ାଜାହାଜ ଖବର ସେ ବେଶି ରଖନ୍ତି, ସ୍ପୁଟ୍‌ନିକ ଗୁଡ଼ିକ ଯେମିତି ଉଡ଼ିଲେ ଉଚ୍ଚରେ ଉଡ଼ୁଛନ୍ତି, ଲକ୍ଷ୍ୟ କରୁଥାନ୍ତି । ପ୍ୟାରିସର ଲୌହ ଚୁମ୍ବକ (ଏଫିଲ ଟାୱାର୍) ତଳେ ଛିଡ଼ା ହୋଇ କାଉଣ୍ଟ ଲମ୍ବାଟଙ୍କ ଉଡ଼ାଜାହାଜ ଏକସପେରିମେଣ୍ଟ ଦେଖନ୍ତି ! ମାଟିରୁ ଉଠି ଯେ ମୁକୁଟ ପିନ୍ଧନ୍ତି, ତାଙ୍କର ମନ ବୋଧହୁଏ ସବୁବେଳେ ମାଟି ଉପରେ ବହୁ ଉଚ୍ଚରେ ଥାଏ । ନୂତନ ଚିନ୍ତା, ନୂତନ ପନ୍ଥାକୁ ସେ ଭଲ ପାଆନ୍ତି, ଅଥଚ ପୁରାତନ ପନ୍ଥୀମାନଙ୍କ ସଙ୍ଗେ ହାତ ମିଳାଇ କାମ କରି ପାରନ୍ତି । ସେଥିପାଇଁ ଭାରତର ଯୁବକମାନେ ରାଜନୀତି କ୍ଷେତ୍ରରେ ଗାନ୍ଧିଙ୍କ ଅପେକ୍ଷା ନେହେରୁଙ୍କୁ ବେଶି ପସନ୍ଦ କରନ୍ତି । ରାଜନୀତିର କଠୋର ସଂଘର୍ଷରେ ଜୀବନ ରୁକ୍ଷ ଓ ରୁଧିରକ୍ତ ହେଲେ ମଧ୍ୟ ଅନ୍ତରର କୋମଳତା ତାଙ୍କର ନଷ୍ଟ ହୋଇନ । ଚିରଦିନ ସେ ସୁନ୍ଦରର ଉପାସକ । ଫୁଲ ଦେଖି ଓ ପିଲା ଦେଖି ସେ ବିହ୍ୱଳ ହୁଅନ୍ତି । ନେହେରୁ ଜୀବନ କଳା-ବିଜ୍ଞାନର ଅପୂର୍ବ ସମ୍ମିଶ୍ରଣ ।

ସତେଇଶ ବର୍ଷର ସାଧନା ପରେ ଭାରତ ମୁକ୍ତ ହେଲା । ନେହେରୁ ହେଲେ ସମସ୍ୟା ବହୁଳ ଭାରତର ପ୍ରଧାନମନ୍ତ୍ରୀ, ପ୍ରାଚ୍ୟ ପୃଥିବୀର ଅପ୍ରତିଦ୍ୱନ୍ଦୀ ପ୍ରତିନିଧି । ତାଙ୍କ ନେଳବାହା ଥିଲେ ଦିଲ୍ଲୀର କଟୁଆଳ, ସେ ହେଲେ ସାରା ଭାରତର କଟୁଆଳ । ପୃଥିବୀର ଯେ କୌଣସି ନେତା—ଚର୍ଚ୍ଚିଲ, ଷ୍ଟାଲିନ, ମାଓ-ସେ ତୁଙ୍ଗ ବା ଆଇଜେନହୋର ଯେତିକି କାମ କରନ୍ତି; ନେହେରୁ ବି ସେତିକି କରନ୍ତି । କିନ୍ତୁ ନୂତନ ସମସ୍ୟା ନେଇ ନେହେରୁ ଏ ସମସ୍ତଙ୍କ ଅପେକ୍ଷା ବେଶି ଚିନ୍ତା କରନ୍ତି । ସେ ରାତି ଗୋଟାଏ ପର୍ଯ୍ୟନ୍ତ

ଦିନ ରାତି ମୋଟେ ପାଞ୍ଚ ଘଣ୍ଟା ବିଶ୍ରାମ କରନ୍ତି । ସେ ସତୁରି ବର୍ଷ ବୟସରେ ମଧ୍ୟ ଯୁରଷ୍ଟ୍ୟୁମାନଙ୍କ ନିକଟରେ ତରୁଣ ଥିଲେ । ଆଜି ଯଦି କେହି ନେହେରୁଙ୍କୁ ଆନନ୍ଦ ଭବନର ସୁଖ ସମ୍ଭୋଗ, କେମ୍ବ୍ରିଜ ଜୀବନର ନିଶ୍ଚିତ ଉପଭୋଗ କଥା ମନେ ପକାଇ ଦିଅନ୍ତେ, ତେବେ ନେହେରୁ ବୋଧହୁଏ କହନ୍ତେ, "ମୁକୁଟ ମଣ୍ଡିତ ରାଜର୍ଷିର ନୁହଇ ଶାନ୍ତ-ଆସ୍ୱାଦ ।"

---

# କଟକର ସରଳ ବାଳକ ଭାରତର ଓ୍ୱାସିଂଟନ

ଆଜ ଦୁନିଆରେ ନେତା ତ ଅନେକ; ମାତ୍ର ନେତାଜୀ କହିଲେ କେବଳ ଜଣକୁ ବୁଝାଏ । କଟକରେ ତାଙ୍କର ଜନ୍ମ, କଲିକତାରେ କର୍ମ ବର୍ଲିନରେ ଅଜ୍ଞାତବାସ ଓ ବର୍ମା ବଣରେ ମୃତ୍ୟୁ । ମୃତ୍ୟୁ ବୋଲି କହିଲେ ଠିକ୍ ହେବ ନାହିଁ; କାରଣ ଏପର୍ଯ୍ୟନ୍ତ କେହି ସଠିକ ଜାଣନ୍ତି ନାହିଁ, ସେ ପ୍ରକୃତରେ ମୃତ କି ଜୀବିତ । ପାଞ୍ଚିଶତଳ ନଅାଁ ଘର ମଝିରେ ମଝିରେ ଖବରକାଗଜରେ ଝଲସି ଉଠେ ଗୋଟିଏ ସମ୍ବାଦ 'ନେତାଜୀ ଜୀବିତ ଅଛନ୍ତି ।' କ୍ଷଣକ ପାଇଁ ଉନ୍ମାଦନା ସୃଷ୍ଟି ହୁଏ, ପୁଣି ଶାନ୍ତ ପଡ଼ିଯାଏ । କେବେ ଯେ ଏହି ରହସ୍ୟର ଦ୍ୱାର ଉଦ୍‌ଘାଟିତ ହେବ, କେହି ଜାଣେ ନା । ସତ୍ୟ ଓ ସନ୍ଦେହର ପ୍ରହେଳିକା ଭିତରେ ଯେଉଁ ଜନନାୟକଙ୍କ ଜୀବନ-ଇତିହାସ ଏବେ ବି ଅମୀମାଂସିତ ରହିଛି, ତାଙ୍କର ପୁରା ନା ସୁଭାଷଚନ୍ଦ୍ର ବୋଷ । ଆମେ ତାଙ୍କୁ କହୁ ନେତାଜୀ, ଆମେରିକାନମାନେ କହନ୍ତି 'ଭାରତର ଓ୍ୱାସିଂଟନ ।

ଭାରତର ନେତୃତ୍ୱ ଇତିହାସରେ ତିନ ଜଣ ପ୍ରଧାନ । ସେମାନଙ୍କର ମଧ୍ୟରୁ ଜଣେ ନରମପନ୍ଥୀ, ଜଣେ ଗରମପନ୍ଥୀ ଓ ଜଣେ ଚରମପନ୍ଥୀ । ଗାନ୍ଧି ଓ ନେହେରୁଙ୍କର ପୂର୍ଣ୍ଣ ବିକାଶ ହେଲା; ମାତ୍ର ସୁଭାଷଚନ୍ଦ୍ର ପୂର୍ଣ୍ଣଚନ୍ଦ୍ର ହେବା ପୂର୍ବରୁ ଅମାବାସ୍ୟା ଅନ୍ଧାରରେ ମଉଳି ପଡ଼ିଲେ । ଶିକ୍ଷା ଦୃଷ୍ଟିରୁ ନେହେରୁ ପୁରା ସାହେବ; କିନ୍ତୁ ଗାନ୍ଧି ଓ ସୁଭାଷ ଅଧା ସାହେବ । ଦୁଇଜଣ ବାରିଷ୍ଟର, ଜଣେ ଆଇ. ସି. ଏସ୍. । ଦୁଇଜଣ ଅବସ୍ଥାଚକ୍ରରେ ନେତା ହୋଇଥିଲେ ମାତ୍ର ସୁଭାଷ ଥିଲେ ବନସ୍ତ କଣ୍ଟା, ମୂଳରୁ ଗୋଜା, ଅମାବାସ୍ୟା ଅନ୍ଧକାରରେ ଅଲିଭା ସଳିତା ।

ଆଜ ନେତାଙ୍କ ନାଁ ଶୁଣିଲେ ବଙ୍ଗ ଦେଶରେ ଜଣେ ଯୁବକ ନେତାଙ୍କର ଚିତ୍ର ଆଖି ଆଗରେ ଭାସିଯାଏ । ସେ ଓଡ଼ିଆ ନୁହନ୍ତି ସତ୍ୟ; କିନ୍ତୁ ଓଡ଼ିଶାର ରାଜଧାନୀ କଟକ ସହରରେ ତାଙ୍କର ଜନ୍ମ, କାରବାଟୀ ଗୋଡ଼ମାଟିରେ ତାଙ୍କର ଧୂଳିଖେଳ, ଓଡ଼ିଶା ପାଣି-ପବନରେ ସେ ପୁଷ୍ଟ । ମାତ୍ର ଓଡ଼ିଶା ସବୁବେଳେ କୋଇଲିମାନଙ୍କର କାଉବସା । ସେ ପାଳେ, ଅଥଚ ଫଳ ଫଳିଲାବେଳକୁ ହୁଏ ଅନ୍ୟର । କଟକର ଜଣାଶୁଣା ସରକାରୀ ଓକିଲ ଜାନକୀନାଥ ବୋଷଙ୍କର ଷଷ୍ଠ ପୁତ୍ର ସୁଭାଷଚନ୍ଦ୍ର, ୧୮୯୭ ଜାନୁୟାରୀ ୨୩ ତାରିଖରେ ଜନ୍ମ ହୋଇଥିଲେ । ସେ କାଳର ଯେତେ ନାମଜାଦା ଓକିଲ, ସମସ୍ତେ ସାହେବୀ ଢଙ୍ଗରେ ଜୀବନ କାଟୁଥିଲେ, ତେଣୁ ପାଠପଢ଼ା ବୟସ ହେଲାରୁ ବାପା ସୁଭାଷଙ୍କୁ ପ୍ରୋଟେଷ୍ଟାଣ୍ଟ ସ୍କୁଲକୁ ପଠାଇଲେ ।

ନିଜ ଲୋକଙ୍କଠାରୁ ଅଲଗା ରହି ସାହେବ ପିଲାମାନଙ୍କ ସାଙ୍ଗରେ ପାଠପଢ଼ିବାକୁ ତାଙ୍କୁ ଭଲ ଲାଗିଲା ନାହିଁ । ତେଣୁ ସେ କଲିଜିଏଟ ସ୍କୁଲରେ ନାମ ଲେଖାଇଲେ । ସ୍କୁଲରେ ସୁଭାଷ ଦେଖିଲେ ଯେ ତାଙ୍କ ଶିକ୍ଷକ ଧୋତି ପିନ୍ଧି ଚାଦର ପକାଇ କ୍ଲାସକୁ ଆସୁଛନ୍ତି । ତହିଁ ଆରଦିନ ସେ ବି ଧୋତି ପିନ୍ଧି ଚାଦର ପକାଇ ସ୍କୁଲକୁ ବାହାରିଲେ । ଜାନକୀବାବୁ ଓକିଲଙ୍କ ପୁଅ ସାହେବୀ ଛାଡ଼ି ଓଡ଼ିଆଙ୍କ ପରି ଧୋତି ଚାଦର ପକାଇ ସ୍କୁଲକୁ ଆସିଛନ୍ତି ଦେଖି ସମସ୍ତେ ଯେତିକି ଅବାକ, ସେତିକି ଖୁସି । ସେ ଯୁଗରେ ବଡ଼ଲୋକ ପିଲାମାନେ ହିଁ ପର ପୁଛ ପିନ୍ଧି ମୟୂର ସାଜୁଥିଲେ । ସୁଭାଷ ଯେତେବେଳେ ଘରକୁ ଫେରନ୍ତି, ଘରେ ସେଦିନ ଭାରି ଚହଳ । ବାପା ଜାଣିଲେଣି ସୁଭାଷ ସାହେବୀ ଛାଡ଼ି ସ୍ୱଦେଶୀ ସାଜଛନ୍ତି । କିଏ ଜାଣେ ବାପାଙ୍କଠାରୁ ଆଜି କଣ ମିଳିବ !

ନେହେରୁଙ୍କ ପିତା ମୋତିଲାଲଙ୍କ ମତ ଜାନକୀ ବାବୁ ବି ଘୋର ସ୍ୱାଧୀନ ଲୋକ । ସୁଭାଷଙ୍କ ତାଙ୍କ ପିତା ଯେତେବେଳେ ପୋଷାକ ପରିବର୍ତ୍ତନ କଥା ପଚାରନ୍ତି, ସେତେବେଳେ ସୁଭାଷ ନିର୍ଭୟ ଚିତ୍ତରେ କହିଲେ, ସେ ଯାହା କରୁଛନ୍ତି ଠିକ୍ କରୁଛନ୍ତି । ସେ ସ୍ୱଦେଶୀ ଲୋକମାନଙ୍କ ଗହଣରେ 'ହଂସ ମଧ୍ୟେ ବକୋଯଥା' ସାଜି ବଡ଼ିମା ଦେଖାଇବାକୁ ଘୃଣା କରନ୍ତି । ଜାନକୀ ବାବୁ ଚୁପ୍ ରହିଲେ । ବାଲ୍ୟ-କାଳରେ ଯେ ବାପାଙ୍କୁ ଜବାବ ଦେଇଥିଲେ, ଯୌବନରେ ଗାନ୍ଧିଙ୍କ ବିରୁଦ୍ଧରେ ଗର୍ଜନ କରିବା ତାଙ୍କ ପକ୍ଷରେ ବିଶେଷ କିଛି ନୁହେଁ । ମନେ ରଖିବାକୁ ହେବ ସେ ଏକମାତ୍ର ନେତା; ଯେ ଗାନ୍ଧିଙ୍କୁ ପ୍ରତିବାଦ କରିଥିଲେ, ଗାନ୍ଧିଙ୍କର ଇଚ୍ଛା ବିରୁଦ୍ଧରେ ବି କଂଗ୍ରେସ ସଭାପତି ହୋଇଥିଲେ; ଅନ୍ୟମାନେ ପବନ ହୋଇ ପାରନ୍ତି; କିନ୍ତୁ ସୁଭାଷଚନ୍ଦ୍ର ଯେ ଆଗ୍ନେୟଗିରି !

ଗାନ୍ଧି ଓ ନେହେରୁ ଉଭୟେ ସ୍କୁଲ ବୟସରେ ବଡ଼ ଲାଜକୁଳା ଥିଲେ । ବାରିଷ୍ଟର ହେବା ପର୍ଯ୍ୟନ୍ତ ସେମାନଙ୍କର ପାଟି ଫିଟୁ ନ ଥିଲା । କିନ୍ତୁ ନେତା ସାଜିବାର, ଦଳ ଗଢ଼ିବାର ସମସ୍ତ ଲକ୍ଷଣ ସୁଭାଷଙ୍କଠାରେ ସ୍କୁଲ ଜୀବନରୁ ଦେଖା ଦେଇଥିଲା । ସେ କାଳର ଧନୀପୁତ୍ର ସୁଭାଷଚନ୍ଦ୍ର ଖାଲି ପାଦରେ ହାତରେ ଔଷଧ, ହାତରେ ପଥି ନେଇ କେତେବାର ଯେ ବସନ୍ତ ରୋଗୀଙ୍କର ଗସ୍ତାଗାଟରେ ସେବା କରିଛନ୍ତି, ତାହା ଅନେକ ଲୋକଙ୍କ ଆଖିରେ ପଡ଼ିଛି । ବାପା ଧନେ ହେଲେ ପ୍ରେରଣା ଦେଇନାହାନ୍ତି, ଶିକ୍ଷକ ଧନେ ହେଲେ ଉପଦେଶ ଦେଇ ନାହାନ୍ତି; କିନ୍ତୁ ବିନସ୍ତ କଣ୍ଠା ସୁଭାଷଚନ୍ଦ୍ର ସବୁ ମନକୁ ମନ କରୁଛନ୍ତି । ଯାହା କହନ୍ତି ସେ ଜନ୍ମରୁ ନେତା । ଜମ୍ ସମସ୍ତ ପାଠ

ପଢ଼ନ୍ତି, ଅଥଚ ସାରା ସ୍କୁଲରେ ରେକର୍ଡ଼ ନମ୍ବର ରଖନ୍ତି । ଅଙ୍କରେ ଶହେରୁ ଶହେ, ଅନ୍ୟାନ୍ୟ ବିଷୟରେ ଶହେରୁ ନବେ । ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହିଭଳି ଛାତ୍ର ସୁଭାଷଚନ୍ଦ୍ର ବିଲାତରେ ଆଇ. ସି. ଏସ୍. ପରୀକ୍ଷାରେ ଚତୁର୍ଥ ସ୍ଥାନ ଅଧିକାର କରିଥିଲେ । ପୃଥିବୀରେ ଖୁବ୍ କମ୍ ଜଣାଶୁଣା ନେତା ବହି ପାଠରେ ଏତେ କୃତବିଦ୍ୟ । ଚର୍ଚ୍ଚିଲ ଦୁଇଥର ଫେଲ ହୋଇଥିଲେ, ଆଇନେନ ହୋର୍ ଫୁଟବଲ ଖେଳ ନାହିଁ କରିଥିଲେ; ଷ୍ଟାଲିନ୍ ସାମାନ୍ୟ ପୂର୍ଣ୍ଣପଣ୍ଡା, ମାଓ-ସେ ତୁଙ୍ଗ ବିଡ଼ମାଟି କ୍ଷେତ୍ରରେ ଲଦୁଥିଲେ । ଦୁଇ ବାରିଷ୍ଟର ଗାନ୍ଧି ଓ ନେହେରୁ ଅତି ସାଧାରଣ ଛାତ୍ର । କିନ୍ତୁ ସୁଭାଷ ସାରାଜୀବନ ପ୍ରଥମ ଶ୍ରେଣୀ ଛାତ୍ର । ମାଟ୍ରିକ୍ୟୁଲେସନରେ ବିଶ୍ୱ-ବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ପାଇଥିଲେ । କଲିକତାରେ ପ୍ରଥମେ ପ୍ରେସିଡେନ୍‌ସି କଲେଜ ପରେ ଓ ସ୍କଟିସ୍ ଚର୍ଚ୍ଚ କଲେଜରେ ପଢ଼ି ଦର୍ଶନଶାସ୍ତ୍ରରେ ପ୍ରଥମ ଶ୍ରେଣୀ ଅନର୍ସ ପାଇଥିଲେ ।

ଏ ଦେଶରେ ସବୁ ବଡ଼ ନେତା ବିଲାତ ଫେରନ୍ତି । ବିଲାତ ବିରୁଦ୍ଧରେ ଆମର ଯେତେ କହିବାର ଥିଲେ ବି ସ୍ୱୀକାର କରିବାକୁ ହେବ, ବିଲାତ ହିଁ ଆମ ନେତାମାନଙ୍କଠି ଜାତୀୟ ଚେତନା ଜାଗ୍ରତ କରିଛି । ବିଲାତ ଦର୍ଶନ ମାତ୍ରେ ସୁଭାଷ ପ୍ରାଣରେ ବିଦ୍ରୋହ ଅଗ୍ନି ଜଳି ଉଠିଲା । ଏ ଦେଶର ପଇସା ନେଇ ଯଦି ବିଲାତ ଲୋକେ ସୁନାର ଲଙ୍କା ସୃଷ୍ଟି କରିପାରନ୍ତି, ତେବେ ଆମେ ଆମର ପଇସାରେ ରାମରାଜ୍ୟ ସୃଷ୍ଟି କରିପାରିବା ନାହିଁ କାହିଁକି ? ସୁଭାଷ ନିଜେ କହିଥିଲେ, ସାହେବମାନେ ଯେତେବେଳେ ତାଙ୍କ ଜୋତା ବ୍ରସ୍ କରି ଦିଅନ୍ତି, ସେ ମନେ ମନେ ଭାରି ଖୁସି ହୁଅନ୍ତି । ସେଇଟା ବୋଧହୁଏ ତାଙ୍କର ମନସ୍ତାତ୍ତ୍ୱିକ ପ୍ରତିବାଦ । ଆମଘରେ ଯେ ଆମ

ଉପରେ ମାଲିକ ସାଜି ଆମ ପିଠିରେ ଚାବୁକ ହାଣନ୍ତି, ତାଙ୍କରି ଦେଶରେ ତାଙ୍କରି ଭାଇବନ୍ଧୁ ଆମ ଜୋତା ସଫାକଲେ ଟିକଏ ବୋଧହୁଏ ଆତ୍ମପ୍ରସାଦ ହେବାର କଥା । ଖାଲି ନିଜ ଦେଶକୁ କିପରି ବିଜିତ ପରି ଶୃଙ୍ଖଳିତ କରିବେ, ଏହି ଚିନ୍ତାରେ ସେ ବୁଡ଼ି ରହିଲେ । ବିଦେଶୀ ଚାକିରି, ବିଦେଶୀ ସମ୍ମାନକୁ ସେ କିପରି ଘୃଣା କରୁଥିଲେ ଓ ତାଙ୍କର ଜାତୀୟତାବୋଧ କିପରି ଉତ୍କଟ ଥିଲା, ଯଦି ବିଶ୍ୱାସ ନ କରନ୍ତି, ତେବେ ନିମ୍ନ ଘଟଣାଟି ପଢ଼ନ୍ତୁ ।

ଆଇ. ସି. ଏସ୍. ପରୀକ୍ଷାରେ ପାସ କରି ସେ ଟ୍ରେନିଂ ପାଉଥାନ୍ତି । ଥରେ କେତୋଟି ଇଂରାଜୀ ଲେଖା ଭାରତୀୟ ଭାଷାରେ ଅନୁବାଦ କରିବାପାଇଁ ସେମାନଙ୍କୁ ଦିଆଗଲା । ସେଥିରେ ଗୋଟିଏ ଜାଗାରେ ଲେଖାଥିଲା, 'ଭାରତୀୟ ସିପାହୀମାନେ ଅସାଧୁ' ( Indian Sepoys aer Dishonest ) । ଏହି ଧାଡ଼ି ଆଖିରେ ପଡ଼ିବାମାତ୍ରେ ସୁଭାଷ ନିଆଁ ହୋଇଗଲେ । ଏପରି ଅସମ୍ମାନସୂଚକ କଥା ସେ ଅନୁବାଦ କରିବେ ନାହିଁ ବୋଲି ପ୍ରଶ୍ନକର୍ତ୍ତାଙ୍କୁ ଜଣାଇଦେଲେ । ପ୍ରଶ୍ନକର୍ତ୍ତା ସୁଭାଷଙ୍କୁ ବୁଝାଇ କହିଲେ "ମୁଁ ତୁମର ଏହି ନିର୍ଭୀକ ଆତ୍ମସମ୍ମାନବୋଧକୁ ପ୍ରଶଂସା ନ କରି ରହିପାରୁନି; ମାତ୍ର ତୁମେ ଆଦେଶ ପାଳନ ନ କଲେ ଆଇ. ସି. ଏସ୍. ଚାକିରିରେ ରହିପାରିବ ନାହିଁ । "ଆଇ. ସି. ଏସ୍. ଚାକିରିର ମହାତ୍ମ୍ୟ ଜାଣନ୍ତି ତ ? ବିଶେଷତଃ ସେ ଯୁଗରେ ଆଇ. ସି. ଏସ୍.—ଭାରତଭୂମିରେ ସେମାନେ ଚଳନ୍ତି । ଦେବତ ଇନ୍ଦ୍ରପଦ ପାଇଁ ଯେଉଁମାନେ ତପସ୍ୟା କରି କୌଣସି କାରଣବଶତଃ ଶଚୀଙ୍କଠାରୁ ବରଣମାଳା ପାଇପାରନ୍ତି ନାହିଁ, ସେହିମାନେ ହୁଅନ୍ତି ଆଇ. ସି. ଏସ୍. । ଏହିପରି ଇନ୍ଦ୍ରତ୍ୱ ଯା' ପାଦତଳେ

ଲେଖିଥିଲେ, ସେ ପ୍ରଶ୍ନକର୍ତ୍ତାଙ୍କୁ କି ଉତ୍ତର ଦେଇଥିବେ ବୋଲି ଭାବୁଛନ୍ତି ? ଆଗ୍ନେୟଗିରିରୁ ଅଗ୍ନ୍ୟୁଦ୍‌ଗୀରଣ ଛଡ଼ା ଅନ୍ୟ କଣ ହୋଇପାରେ ? ନେତାଜୀ ଉତ୍ତର ଦେଲେ ଆଇ. ସି. ଏସ୍. ଇନ୍ଦ୍ରପଦବୀର ଭୋଗଲାଳସା ମୋର ନାହିଁ । ଜାତିର ଅପମାନ ସହ୍ୟ କରିବା ମୋ ପକ୍ଷରେ ଅସମ୍ଭବ । ମୋତେ କେହି ବାହାର କରିଦେବା ପୂର୍ବରୁ ମୁଁ ତାହା ଗୋଡ଼ରେ ଆଡ଼େଇଦେଇ ବାହାରି ଯିବାକୁ ଚାହେଁ । ଏହି ସମ୍ବାଦ ପାଇ ପିତା ଜାନକୀନାଥ ଏତେ ଟିକେ ବି ଅନାଥ ଅନୁଭବ କରିନାହାନ୍ତି । ସେ ବରଂ ଖୁସି । ସେହିଦିନୁ ସୁଭାଷଚନ୍ଦ୍ରଙ୍କ ଖ୍ୟାତି ଚନ୍ଦ୍ରକଳା ପରି ବଢ଼ିଚାଲିଲା । ଷ୍ଟେଟସ୍‌ମ୍ୟାନ୍ ଖବରକାଗଜରେ ସମ୍ବାଦ ବାହାରିଲା—ଦୁର୍ଭାଗ୍ୟର କଥା, ବ୍ରିଟିଶ୍ ଅମଲାତନ୍ତ୍ର ସୁଭାଷଙ୍କ ପରି ଜଣେ ବିଚକ୍ଷଣ ଲୋକଙ୍କୁ ହରାଇଲେ ଓ କଂଗ୍ରେସ ଲୋକେ ତାଙ୍କୁ ସହଜରେ ପାଇଲେ ।"

ଭାରତକୁ ଫେରି ସୁଭାଷଚନ୍ଦ୍ର କଂଗ୍ରେସରେ ଯୋଗ ଦେଲେ । ୧୯୨୧ ମସିହାରେ ଯେତେବେଳେ ପ୍ରିନ୍ସ ଅଫ୍ ୱେଲ୍ସ ଭାରତ ଆସିଥିଲେ, ତାଙ୍କୁ ବଏକଟ୍ କରିବା ପାଇଁ ସେ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ଫଳରେ ତାଙ୍କୁ ଛ'ମାସ ସଜା ମିଳିଲା । ଆହାଶୀ ଆଇ. ସି. ଏସ୍. ପଦବୀରୁ ଏହି ହେଲା ପ୍ରଥମ ମୃତ୍ତିକା-ଦର୍ଶନ । ଷ୍ଟୁରପତ ମାଜିଷ୍ଟ୍ରେଟଙ୍କୁ ନେତାଜୀ କହିଲେ, "ଆଜ୍ଞା, ମୁଁ କଣ କୁକୁଡ଼ା ଚୋରି କରିଛି ଯେ ମୋତେ ଛ' ମାସ ମିଳିଲା ? ଏହି ଯେଉଁ କାରାଜୀବନ ଆରମ୍ଭ ହେଲା, ଭାରତ ଛାଡ଼ିଲା ପର୍ଯ୍ୟନ୍ତ ତାହା ଚାଲିଲା । ଆଲିପୁର, ମୁର୍ଶିଦାବାଦ, ରେଙ୍ଗୁନ, ମାଣ୍ଡାଲେ, ଜେଲ ପରେ ଜେଲ କେତେ ଯେ ସେ ବୁଲିଛନ୍ତି, ତାର ଠିକଣା ନାହିଁ । ଜାତି ପାଇଁ କଷ୍ଟ ସ୍ୱୀକାର କରି ଜାତିର ସମ୍ମାନ

ପାଇଛନ୍ତି, ଭାରତ କଂଗ୍ରେସ ସଭାପତି ହୋଇଛନ୍ତି । ଗାନ୍ଧିଙ୍କର 'ମାରିବା' ମତଠାରୁ ତାଙ୍କର 'ମରିବା' ମତ ପୃଥକ ହୋଇଥିବାରୁ ସେ କଂଗ୍ରେସରୁ ବାହାରିଯାଇ ଫରଓ୍ୱାର୍ଡ ବ୍ଲକ ଗଢ଼ିଲେ । ଦେଶସାରା ଅଗ୍ନି ଜାଳିଲେ । ବ୍ରିଟିଶଶାସନକୁ ନିଜ ଶକ୍ତିରେ, ଆବଶ୍ୟକ ହେଲେ ବାହ୍ୟ ଶକ୍ତି ସାହାଯ୍ୟରେ ହଟାଇବାକୁ ହେବ ବୋଲି ସ୍ଥିର କଲେ ।

"ଫରଓ୍ୱାର୍ଡ ବ୍ଲକ" କାଗଜରେ ଏକ ଆପତ୍ତିଜନକ ଲେଖା ପାଇଁ ସରକାର ତାଙ୍କୁ ନଜରବନ୍ଦୀରେ ରଖିଥିଲେ । ୧୯୪୦ ମସିହାରେ ଏକ ଶୀତ ସନ୍ଧ୍ୟାରେ ଭାରତ ପୋଲିସଙ୍କ ଆଖିରେ ଧୂଳି ଦେଇ ସୁଭାଷଚନ୍ଦ୍ର ଦେଶ ଛାଡ଼ି ଚାଲିଗଲେ । ସେ ଦିନର ଧର୍ମପୁତ୍ର ସୁଭାଷଚନ୍ଦ୍ର ଆଜି ଆଫଗାନିସ୍ଥାନ, କାବୁଲ, କନ୍ଦାହାରର ଘୋର କାନ୍ତାରରେ ଘୂରି ଘୂରି ସ୍ୱାଧୀନତା ଖୋଜି ବୁଲିଲେ । କି ଶୀତ ବରଫ ! ଦେହରେ ଖାଲି କେତେ ଖଣ୍ଡ ମୁସଲମାନ ପୋଷାକ । ଭାରତର ଭବିଷ୍ୟତ ଆଶଙ୍କାରେ ଦେହ ମନ ଉଭୟ କାମ କରୁଥାଏ । ରୁଷିଆ ଯିବା ପାଇଁ ଯେତେ ଚେଷ୍ଟା କଲେ ବି ରୁଷିଆ ସରକାର ତାଙ୍କୁ ଗ୍ରହଣ କଲେ ନାହିଁ; କାରଣ ପୃଥିବୀର ଇତିହାସ ଧାରା ସେତେବେଳେ ସମ୍ପୂର୍ଣ୍ଣ ଓଲଟି ଯାଇଥିଲା । ହିଟଲରର ବିରୁଦ୍ଧରେ ଇଂଲଣ୍ଡ ଓ ରୁଷିଆ ହାତ ମିଳାଇ ସାରିଥିଲେ, ତେଣୁ ଏକମାତ୍ର ଆଶାଭରସା ହିଟଲର । ସୁଭାଷଙ୍କ ଆଶା ସଫଳ ହେଲା । ହିଟଲରଙ୍କର କରମର୍ଦ୍ଦନ କରି ନବୀନ ସାହସରେ ସୁଭାଷଙ୍କ ଅନ୍ତରରେ ଉଷ୍ମତା ଫେରିଆସିଲା । ସେ ଗଢ଼ିଲେ "ଆଜାଦ ହିନ୍ଦ୍ ଫୌଜ ।" ବର୍ଲିନ ବେତାର କେନ୍ଦ୍ରରୁ ନେତାଜୀ ଯେଉଁଦିନ ମୁକ୍ତିବାର୍ତ୍ତା ହୁଙ୍କାର କଲେ ବ୍ରିଟିଶକେଶରୀଙ୍କର ସେହିଦିନ ଚେତା ପଶିଲା ।

ତା'ପରେ ୧୯୪୧ରେ ୧୫ ହଜାର ସୈନ୍ୟସାମନ୍ତ ନେଇ ସୁଭାଷଚନ୍ଦ୍ର ସୁମାତ୍ରା ମେନାଙ୍କ ବନ୍ଦରରେ ପହଞ୍ଚି ଜାପାନ ସରକାରଙ୍କ ସଙ୍ଗେ ଯୋଗାଯୋଗ ସ୍ଥାପନ କଲେ । ରେଙ୍ଗୁନ ସହରରେ ଭାରତର ଶେଷ ସମ୍ରାଟ ବାହାଦୁର ଶାହାଙ୍କ ସମାଧି ପାଖରେ ଛିଡ଼ା ହୋଇ ସୁଭାଷ ପଣ କରିଥିଲେ, ପୁଣି ଦିଲ୍ଲୀ ଫେରିଯିବାକୁ ହେବ । "ଦିଲ୍ଲୀ ଚଲେ" ଓ "ଜୟହିନ୍ଦ୍" ଡାକରେ ରେଙ୍ଗୁନ ଆକାଶ ଫାଟି ପଡ଼ିଲା; କିନ୍ତୁ ସୁଭାଷ-ସ୍ୱପ୍ନ ସଫଳ ହୋଇ ପାରିଲା ନାହିଁ । ସୁଭାଷଙ୍କର କଣ ହେଲା, ଏବେ ମଧ୍ୟ ଜଣା ନାହିଁ । ମାତ୍ର ମାନସ୍ତ କଣ୍ଠରୁ ଏବେ ମଧ୍ୟ ଭାସିଆସେ ସ୍ୱାଗତ ସମ୍ଭାଷଣ "ଜୟହିନ୍ଦ୍" ।

---

ମୁଦ୍ରାକର—ନବ ପ୍ରେସ୍, କାଜିବଜାର କଟକ-୧